

ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ରାଜ୍ୟସ୍ତରୀୟ **ମେରି ମାଟି ମେରା ଦେଶ** ଅଭିଯାନର ଶୁଭାରମ୍ଭ କରୁଛନ୍ତି ।




ଗ୍ରାମପଞ୍ଚାୟତ ସହ ରାଜ୍ୟର ରାଜଧାନୀକୁ ସଂଯୋଗ କରୁଥିବା ସୁଲଭ **ଲକ୍ଷ୍ମୀ ବସ୍** ସେବାର ଶୁଭାରମ୍ଭ ସହ
ମାଲ୍କାନଗିରିଠାରୁ ଏମ୍‌ଭି–୩ ପର୍ଯ୍ୟନ୍ତ ବସ୍‌ରେ ଯାତ୍ରା କରୁଛନ୍ତି ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ।

# ଉତ୍କଳ ପ୍ରସଙ୍ଗ


The Utkal Prasanga

November - 2023

୮୦ ଭାଗ ୪ର୍ଥ ସଂଖ୍ୟା କାର୍ତ୍ତିକ-ମାର୍ଗଶିର ନଭେମ୍ବର-୨୦୨୩



ସଂଜୟ କୁମାର ସିଂ, ଆଇ.ଏ.ଏସ୍

ପ୍ରମୁଖ ଶାସନସଚିବ

ସରୋଜ କୁମାର ସାମଲ, ଆଇ.ଏ.ଏସ୍

ନିର୍ଦ୍ଦେଶକ

କସ୍ତୁରୀ ମହାପାତ୍ର

ସମ୍ପାଦିକା

ସମ୍ପାଦନା ସହଯୋଗୀ

ସଚ୍ଚିଦାନନ୍ଦ ବାରିକ

ସାଧନା ମିଶ୍ର

ପ୍ରଚ୍ଛଦପଟ ଓ ଲେ-ଆଉଟ୍ ଡିଜାଇନିଂ

ମାନସ ନାୟକ

କମ୍ପ୍ୟୁଟର ସେଟିଂ ଓ ଡିଜାଇନିଂ

ଅରୁଣ କୁମାର କର

ଫଟୋ :

ରାଜୁ ସିଂ, ନିରଞ୍ଜନ ବରାଳ

ମନୋରଂଜନ ମହାନ୍ତି, ସନ୍ତୋଷ କୁମାର ସାହୁ





ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର-୭୫୧୦୦୧

ଇ-ମେଲ୍ : uporipr@gmail.com, ୱେବ୍‌ସାଇଟ୍ : https://odisha.gov.in

ପ୍ରତିଖଣ୍ଡ : ଟ. ୫.୦୦

# ସୂଚୀ

## ନଭେମ୍ବର-୨୦୨୩



❖ ❖ ❖

# ଓଡ଼ିଶା ବିଧାନସଭାରେ ମାନ୍ୟବର ଅର୍ଥମନ୍ତ୍ରୀଙ୍କ ଦ୍ୱାରା ଅତିରିକ୍ତ ବଜେଟ୍ ୨୦୨୩-୨୪ ଉପସ୍ଥାପିତ

ମାନ୍ୟବର ଅର୍ଥମନ୍ତ୍ରୀ ୨୨ ସେପ୍ଟେମ୍ବର, ୨୦୨୩ରେ ବିଧାନସଭାରେ ୨୦୨୩-୨୪ ଆର୍ଥିକ ବର୍ଷର ଅତିରିକ୍ତ ବଜେଟ୍ ଉପସ୍ଥାପନ କରିଛନ୍ତି । ଏଥିପାଇଁ ମୋଟ ୨୮,୨୦୦ କୋଟି ଟଙ୍କାର ବ୍ୟୟବରାଦ ବିଧାନସଭାର ଅନୁମୋଦନ ପାଇଁ ଉପସ୍ଥାପନ କରାଯାଇଛି ।

**ଅତିରିକ୍ତ ବଜେଟ୍, ୨୦୨୩-୨୪ ପାଇଁ ବ୍ୟୟ ବରାଦ**

(କୋଟି ଟଙ୍କା ହିସାବରେ)

| କ୍ଷେତ୍ର | ମୋଟ |
|---|---|
| ପ୍ରଶାସନିକ ବ୍ୟୟ | 2,864 |
| କାର୍ଯ୍ୟକ୍ରମ ବ୍ୟୟ | 20,100 |
| ବିପର୍ଯ୍ୟୟ ପ୍ରଶମନ ପାଣ୍ଠି | 4,664 |
| ରାଜ୍ୟ ବଜେଟ୍‌ରୁ ସ୍ଥାନାନ୍ତର | 572 |
| ମୋଟ | **28,200** |

## ୨. ଅତିରିକ୍ତ ବଜେଟ୍‌ର ଆବଶ୍ୟକତା

ଏକ ଜନମଙ୍ଗଳ ରାଷ୍ଟ୍ରରେ ସମ୍ବଳର ଉପଲବ୍ଧତା ଏବଂ ଜନସାଧାରଣଙ୍କ ଆଶା ଓ ଆକାଂକ୍ଷାକୁ ଆଖି ଆଗରେ ରଖି ଉପଲବ୍ଧ ସମ୍ବଳର ପୁନଃବିନିଯୋଗ ତଥା ବିଭିନ୍ନ ସୂତ୍ରରୁ ସହବନ୍ଧିତ ସମ୍ବଳର ପ୍ରାପ୍ତି ମାଧ୍ୟମରେ ଅତିରିକ୍ତ ବଜେଟ୍ ପାଇଁ ବ୍ୟୟବରାଦ କରାଯାଇଛି । ନିମ୍ନଲିଖିତ ପରିପ୍ରେକ୍ଷୀରେ ଅତିରିକ୍ତ ବ୍ୟୟବରାଦ ଆବଶ୍ୟକ ହୋଇଅଛି -

i) ରାଜ୍ୟ ସରକାରଙ୍କ ଅଧୀନରେ ଚାଲୁ ରହିଥିବା ବିଭିନ୍ନ ପ୍ରକଳ୍ପଗୁଡିକୁ ସମ୍ପୂର୍ଣ୍ଣ କରିବା ନିମନ୍ତେ ଅତିରିକ୍ତ ପାଣ୍ଠିର ଆବଶ୍ୟକତା ।

ii) ପ୍ରଚଳିତ ରହିଥିବା କେନ୍ଦ୍ର ଯୋଜନା ଓ କେନ୍ଦ୍ର ପ୍ରବର୍ତ୍ତିତ ଯୋଜନା ଓ ଭାରତ ସରକାରଙ୍କ ଦ୍ୱାରା ଘୋଷିତ ନୂତନ କେନ୍ଦ୍ର ପ୍ରବର୍ତ୍ତିତ ଯୋଜନା ନିମନ୍ତେ ଅତିରିକ୍ତ ବ୍ୟୟବରାଦ ।

iii) ଓଡିଶା ଆକସ୍ମିକ ପାଣ୍ଠିରୁ ନିଆଯାଇଥିବା ଅଗ୍ରୀମ ଅର୍ଥର ଭରଣା ।

iv) ବିଭିନ୍ନ ଦାବି ଅନ୍ତର୍ଗତ ହିସାବ ବ୍ୟବସ୍ଥାପନା ।

**୩. ଅତିରିକ୍ତ ବଜେଟ୍ ପାଇଁ ଅର୍ଥ ବ୍ୟବସ୍ଥା**

ପ୍ରଶାସନିକ ବ୍ୟୟ ଏବଂ ସ୍ଥାନୀୟ ସଂସ୍ଥାକୁ ସ୍ଥାନାନ୍ତର ଅନ୍ତର୍ଗତ ଆବଣ୍ଟନ ବାବଦକୁ ଅର୍ଥ ସମନ୍ୱୟ ଏବଂ ଅର୍ଥ ସମର୍ପଣ ଜରିଆରେ ବ୍ୟବସ୍ଥା କରାଯିବ । ବିପର୍ଯ୍ୟୟ ପରିଚାଳନା ପାଣ୍ଠି ଅଧୀନରେ ଆବଣ୍ଟନ ବାବଦକୁ ରାଜ୍ୟ ବିପର୍ଯ୍ୟୟ ସଙ୍କଟ ପରିଚାଳନା ପାଣ୍ଠି (SDRMF) ରେ ଉପଲବ୍ଧ ବର୍ଷ ଶେଷ ବଳକା ଦ୍ୱାରା ବ୍ୟବସ୍ଥା କରାଯିବ । କାର୍ଯ୍ୟକ୍ରମ ବ୍ୟୟ ନିମନ୍ତେ, ଅତିରିକ୍ତ ବଜେଟ୍‌ରେ ବ୍ୟୟ ବରାଦ ହୋଇଥିବା ୨୦,୧୦୦ କୋଟି ଟଙ୍କା ମଧ୍ୟରୁ ୩,୨୩୫ କୋଟି ଟଙ୍କା ସହବନ୍ଧିତ (Tied-up) ସମ୍ବଳ ସୂତ୍ରରୁ ଓ ବଳକା ଅର୍ଥ ଅତିରିକ୍ତ ରାଜସ୍ୱ ତଥା ଅର୍ଥ ସମର୍ପଣ ଦ୍ୱାରା ଭରଣା କରାଯିବ ।

**୪. ଅତିରିକ୍ତ ବଜେଟ ୨୦୨୩-୨୪ର ନୂତନ ପଦକ୍ଷପ**

- **'ଅମା ଓଡିଶା ନବିନ ଓଡିଶା'** ପାଇଁ ୧,୩୦୨ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- 'Location Accessible Multi-modal Initiative' (LAccMI) ଯୋଜନା ପାଇଁ ୫୫୬ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- ପଞ୍ଚାୟତିରାଜ ସଂସ୍ଥା ମାଧ୍ୟମରେ ବିଦ୍ୟାଳୟରେ ଅତିରିକ୍ତ ଶ୍ରେଣୀଗୃହ ନିର୍ମାଣ ପାଇଁ ୧୫୩ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- ମୁଖ୍ୟମନ୍ତ୍ରୀ ଛାତ୍ର-ଛାତ୍ରୀ ପରିଧାନ ଯୋଜନା ପାଇଁ ୧୧୦ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- ଓଡ଼ିଶା ଜନ୍ମ ଏବଂ ମୃତ୍ୟୁ ପଞ୍ଜୀକରଣ ବ୍ୟବସ୍ଥା (OBDRS) ପାଇଁ ୧୨ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- ଓଡିଶା ମେଟ୍ରୋ ରେଳ ପରିବହନ ପାଇଁ ୨୧୦ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- ସହରୀ ଭିତ୍ତିଭୂମି ବିକାଶ ପାଣ୍ଠି ପାଇଁ ୧୦୦ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- ଓଡିଶା ପରିବହନ ଡ୍ରାଇଭର ଏବଂ ଶ୍ରମିକ କଲ୍ୟାଣ ଯୋଜନା ପାଇଁ ୨୧ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- 'ଜାଗୃତି' ଯୋଜନା ଅଧୀନରେ ଲିଙ୍ଗ-ଭିତ୍ତିକ ହିଂସା ପୀଡ଼ିତା ମହିଳାମାନଙ୍କର ସୁରକ୍ଷା, ବିକାଶ ଏବଂ ସଶକ୍ତିକରଣ ପାଇଁ ୩୮ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- ICDS ଅଧୀନରେ ରାଜ୍ୟ ସହାୟତା କେନ୍ଦ୍ର ପାଇଁ ୧୧ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- CM's Research, Innovation Fellowship ଯୋଜନା ପାଇଁ ୫ କୋଟି ଟଙ୍କା ପ୍ରଦାନ କରାଯାଇଛି ।

- କୁଶଳୀ ଯୁବ ଉଦ୍ୟୋଗୀମାନଙ୍କୁ ପ୍ରୋତ୍ସାହନ ପାଇଁ Nano Unicorn ଯୋଜନା ଅଧୀନରେ ୫ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- ସଂଖ୍ୟାଲଘୁ ବର୍ଗକୁ ବିବାହ ସହାୟତା ପାଇଁ ୧୫ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- ବ୍ଲକ୍ ସ୍ତରୀୟ ବସ୍‌ଷ୍ଟାଣ୍ଡଗୁଡିକର ରକ୍ଷଣାବେକ୍ଷଣ ଏବଂ ପରିଚାଳନା ପାଇଁ ୧୪ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- ଗ୍ରାମପଞ୍ଚାୟତକୁ ସୂଚନା ପ୍ରଯୁକ୍ତିବିଦ୍ୟା ସଂଯୋଗୀକରଣ ପାଇଁ ୨୫୨ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- **ସୁଦକ୍ଷା** ଯୋଜନା ଅଧୀନରେ , ସରକାରୀ ଇଂଜିନିୟରିଂ ଏବଂ ପଲିଟେକ୍‌ନିକ୍‌ରେ ପଢୁଥିବା ଛାତ୍ରୀମାନଙ୍କର, ଚାକିରି ଦକ୍ଷତା ବୃଦ୍ଧି ଏବଂ ଆତ୍ମନିଯୁକ୍ତି ସୁଯୋଗ ସୃଷ୍ଟି ପାଇଁ ୨ କୋଟି ପ୍ରଦାନ କରାଯାଇଛି ।
- ବୟନିକାର Working Capital-Revolving Fund ପାଇଁ ୨୦ କୋଟି ଟଙ୍କା ଟଙ୍କା ପ୍ରଦାନ କରାଯାଇଛି ।
- ସମ୍ବଲପୁରୀ ବସ୍ତ୍ରାଳୟର Working Capital-Revolving Fund ପାଇଁ ୨୦ କୋଟି ଟଙ୍କା ପ୍ରଦାନ କରାଯାଇଛି ।

**୫. ପ୍ରଶାସନିକ ବ୍ୟୟ ପାଇଁ ଅର୍ଥ ବ୍ୟବସ୍ଥା**

ପ୍ରଶାସନିକ ବ୍ୟୟ କ୍ଷେତ୍ରରେ ମୋଟ ୨,୮୬୩ କୋଟି ଟଙ୍କା ବ୍ୟୟବରାଦ କରାଯାଇଛି ।

- ପୋଲିସ୍ ବ୍ୟବସ୍ଥା ସହିତ ନିର୍ବାଚନ ପରିଚାଳନା ପାଇଁ ୧୯୬ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- ଅନୁସୂଚିତ ଜନଜାତି, ଅନୁସୂଚିତ ଜାତି ବିକାଶ, ସଂଖ୍ୟାଲଘୁ ଏବଂ ପଛୁଆ ବର୍ଗ କଲ୍ୟାଣ ବିଭାଗ ଅଧୀନରେ ଅଣ-ଆବାସିକ ଅଟ୍ଟାଳିକାର ମରାମତି ଏବଂ ରକ୍ଷଣାବେକ୍ଷଣ ପାଇଁ ୧୫୦ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- ବିଭିନ୍ନ ନିଯୁକ୍ତି ପରୀକ୍ଷା ପରିଚାଳନା ପାଇଁ, ଓଡିଶା କର୍ମଚାରୀ ଚୟନ ଆୟୋଗ(OSSC) ପାଇଁ ୪ କୋଟି ଟଙ୍କା ଏବଂ ଓଡିଶା ସବ୍-ଅର୍ଡିନେଟ୍ କର୍ମଚାରୀ ଚୟନ ଆୟୋଗ(OSSSC) ପାଇଁ ୪ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- ପାଠ୍ୟ ପୁସ୍ତକ ପ୍ରେସ୍ ପାଇଁ ୧୦ କୋଟି ଟଙ୍କା ପ୍ରଦାନ କରାଯାଇଛି ଏବଂ ମାଧ୍ୟମିକ ବିଦ୍ୟାଳୟଗୁଡ଼ିକରେ ସରକାରୀ ଅତିଥି ଅଧ୍ୟାପକଙ୍କ ଦରମା ପାଇଁ ୬ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- ଓଡିଶାର ମାଧ୍ୟମିକ ଶିକ୍ଷା ବୋର୍ଡକୁ ଅନୁଦାନ ଭାବରେ ୨୧ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- ଅନୁସୂଚିତ ଜନଜାତି ଏବଂ ଅନୁସୂଚିତ ଜାତି ହଷ୍ଟେଲରେ ବୋର୍ଡରମାନଙ୍କର ଚିକିତ୍ସା ପାଇଁ ୩ କୋଟି ଟଙ୍କା ଏବଂ ଅନୁସୂଚିତ ଜନଜାତି,ଅନୁସୂଚିତ ଜାତି ବିକାଶ, ସଂଖ୍ୟାଲଘୁ ଏବଂ ପଛୁଆ ବର୍ଗ କଲ୍ୟାଣ

ବିଭାଗ ଅଧୀନରେ ଥିବା ଉଚ୍ଚ ମାଧ୍ୟମିକ ବିଦ୍ୟାଳୟରେ ଲାବୋରେଟୋରୀ ଉପକରଣ ପାଇଁ ୬ କୋଟି ଟଙ୍କା ପ୍ରଦାନ କରାଯାଇଛି ।

- ଯାଜପୁର ଏବଂ କଳାହାଣ୍ଡିରେ ନୂତନ ମେଡିକାଲ କଲେଜ ଏବଂ ହସ୍ପିଟାଲ ପାଇଁ ୨୭ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- Human-Animal Conflictରେ ପୀଡିତମାନଙ୍କୁ ଅନୁକମ୍ପାମୂଳକ ଅନୁଦାନ ପ୍ରଦାନ ଦିଗରେ ୧୬ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- ଓଡ଼ିଶା ଉଠା ଜଳସେଚନ ନିଗମ(OLIC)କୁ ଅନୁଦାନ ପ୍ରଦାନ ଦିଗରେ ୨୦ କୋଟି ଟଙ୍କା ପ୍ରଦାନ କରାଯାଇଛି ।

**୬. ବିପର୍ଯ୍ୟୟ ପ୍ରଶମନ ପାଣ୍ଠି**

- ଆର୍ଥିକ ବର୍ଷ ଶେଷରେ ରାଜ୍ୟ ବିପର୍ଯ୍ୟୟ ସଙ୍କଟ ପରିଚାଳନା ପାଣ୍ଠି (SDRMF) ର ଥିବା ବଳକା ଅର୍ଥ ବାବଦକୁ ୨୦୨୩–୨୪ ଅତିରିକ୍ତ ବଜେଟ୍‌ରେ ୪,୬୬୪ କୋଟି ଟଙ୍କା ବ୍ୟୟ ବରାଦ କରାଯାଇଛି ।

**୭. ରାଜ୍ୟ ବଜେଟ୍‌ରେ ସ୍ଥାନାନ୍ତର**

୨୦୨୩–୨୪ ଅତିରିକ୍ତ ବଜେଟ୍‌ରେ, ରାଜ୍ୟ ଅର୍ଥ ଆୟୋଗଙ୍କ ସୁପାରିସ୍ ଅନୁଯାୟୀ ସ୍ଥାନୀୟ ନିକାୟ ସଂସ୍ଥାମାନଙ୍କୁ ସ୍ଥାନାନ୍ତର ବାବଦକୁ ୫୭୨ କୋଟି ଟଙ୍କା ବ୍ୟୟବରାଦ କରାଯାଇଛି ।

**୮. କାର୍ଯ୍ୟକ୍ରମ ବ୍ୟୟ ଓ ଅଗ୍ରାଧିକାର କ୍ଷେତ୍ର ପାଇଁ ବ୍ୟୟବରାଦ**

**୮.୧ କୃଷକ କଲ୍ୟାଣ ଓ ଖାଦ୍ୟ ନିରାପତ୍ତା**

କୃଷକ କଲ୍ୟାଣ, ଖାଦ୍ୟ ନିରାପତ୍ତା ଓ ଜଳସେଚନ ସୁବିଧା ପାଇଁ ମୋଟ ୪,୪୩୩ କୋଟି ଟଙ୍କା ବ୍ୟୟବରାଦ କରାଯାଇଛି ।

- ଫସଲ ଉତ୍ପାଦନ ପରିଚାଳନା ପାଇଁ ୨୨୩ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- ଉଦ୍ୟାନ କୃଷି ବିକାଶ କାର୍ଯ୍ୟକ୍ରମ ପାଇଁ ୨୫୩ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- Capital Investment Farm Mechanisation ପାଇଁ ୧୫୦ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- ଖାଦ୍ୟ ସଂରକ୍ଷଣ ଏବଂ ଗୋଦାମ ଅଧୀନରେ Procurement Operation Support System ପାଇଁ ୪୬୪ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- ପ୍ରଧାନମନ୍ତ୍ରୀ ଫସଲ ବୀମା ଯୋଜନା ଅଧୀନରେ ପ୍ରିମିୟମ ସବସିଡି ପାଇଁ ୪୦୦ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- Intensive Aquaculture Inland Fisheries Development ପାଇଁ ୨୩୮ କୋଟି ଟଙ୍କା ପ୍ରଦାନ କରାଯାଇଛି ।

- ବୃହତ୍ ମଧ୍ୟମ ଏବଂ କ୍ଷୁଦ୍ର ଜଳସେଚନ ବିକାଶ ପାଇଁ ୪୪୧ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- ମୁଖ୍ୟମନ୍ତ୍ରୀ ଆଡ଼ିବନ୍ଧ ତିଆରି ଯୋଜନା ପାଇଁ ୧୦୦ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- ପାର୍ବତୀ ଗିରି ଉଠା ଜଳସେଚନ ଯୋଜନା ପାଇଁ ୭୭ କୋଟି ଟଙ୍କା ପ୍ରଦାନ କରାଯାଇଛି ।

### ୮.୨ ମିଶନ୍ ଶକ୍ତି

ମିଶନ୍ ଶକ୍ତି ବିଭାଗ ପାଇଁ ୭୮୩ କୋଟି ଟଙ୍କା ବ୍ୟୟବରାଦ କରାଯାଇଛି ।

- ମହିଳା ସ୍ୱୟଂ ସହାୟକ ଗୋଷ୍ଠୀ ଏବଂ ବ୍ଲକ ସ୍ତରୀୟ ମିଶନ ଶକ୍ତି ଫେଡେରେଶନକୁ ସହାୟତା ପାଇଁ ୭୦୦ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- ମିଶନ୍ ଶକ୍ତି ଅଧୀନରେ ଦକ୍ଷତା ନିର୍ମାଣ ପାଇଁ ୮୩ କୋଟି ଟଙ୍କା ପ୍ରଦାନ କରାଯାଇଛି ।

### ୮.୩ ସାମାଜିକ ସୁରକ୍ଷା

ସାମାଜିକ ସୁରକ୍ଷା ପାଇଁ ସମୁଦାୟ ୭୭୧ କୋଟି ଟଙ୍କା ବ୍ୟୟବରାଦ କରାଯାଇଛି ।

- ମଧୁବାବୁ ପେନ୍‌ସନ୍ ଯୋଜନା ପାଇଁ ୫୦୦ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- ଭିନ୍ନକ୍ଷମଙ୍କ କଲ୍ୟାଣ ପାଇଁ ୨୧୪ କୋଟି ଟଙ୍କା ପ୍ରଦାନ କରାଯାଇଛି ।

### ୮.୪ ସ୍ୱାସ୍ଥ୍ୟ ସେବାର ସୁବିଧା

ଜନସ୍ୱାସ୍ଥ୍ୟ ସେବା ପାଇଁ ମୋଟ ୮୬୨ କୋଟି ଟଙ୍କା ବ୍ୟୟବରାଦ କରାଯାଇଛି ।

- ବିଜୁ ସ୍ୱାସ୍ଥ୍ୟ କଲ୍ୟାଣ ଯୋଜନା ପାଇଁ ୧୨୩ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- ମୁଖ୍ୟମନ୍ତ୍ରୀ ସ୍ୱାସ୍ଥ୍ୟ ସେବା ସେବା ମିଶନ ପାଇଁ ୮୩ କୋଟି ଟଙ୍କା ପ୍ରଦାନ କରାଯାଇଛି ଏବଂ Tertiary Health Care-Super Speciality Services ପାଇଁ ୫୮ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- ସ୍ୱାସ୍ଥ୍ୟ ଏବଂ ଚିକିତ୍ସା ଶିକ୍ଷା କ୍ଷେତ୍ରରେ ଅନୁସନ୍ଧାନ ତଥା ମାନବ ସମ୍ବଳ ବିକାଶ ପାଇଁ ୧୪୭ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- ଜାତୀୟ ସ୍ୱାସ୍ଥ୍ୟ ମିଶନ (NHM) ଅଧୀନରେ ରାଜ୍ୟ ଅଂଶଧନ ବାବଦକୁ ୩୫୯ କୋଟି ଟଙ୍କା ବ୍ୟୟବରାଦ କରାଯାଇଛି ।

### ୮.୫ ମହିଳା ସଶକ୍ତିକରଣ ଓ ଶିଶୁ ବିକାଶ

ମହିଳା ସଶକ୍ତିକରଣ ଓ ଶିଶୁ ବିକାଶ ପାଇଁ ମୋଟ ୪୬୯ କୋଟି ଟଙ୍କା ବ୍ୟୟବରାଦ କରାଯାଇଛି ।

- Sakhsam Aganwadi POSHAN ୨.୦ ଅଧୀନରେ ଅଙ୍ଗନବାଡି ସେବା ତାଲିମ କାର୍ଯ୍ୟକ୍ରମ ପାଇଁ ୨୦ କୋଟି ଏବଂ Mission Batsalya ପାଇଁ ୩୦ କୋଟି ଟଙ୍କା ପ୍ରଦାନ କରାଯାଇଛି ।

- ରାଜ୍ୟରେ ICDSର କାର୍ଯ୍ୟକାରିତା ପାଇଁ ରାଜ୍ୟ ସହାୟତା ଦିଗରେ ୨୫୧ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- MAMATA ଯୋଜନା ଅଧୀନରେ ଗର୍ଭବତୀ ମହିଳାମାନଙ୍କୁ ନଗଦ ହସ୍ତାନ୍ତର ନିମନ୍ତେ ୩୭ କୋଟି ବ୍ୟୟବରାଦ କରାଯାଇଛି ।
- ସଚେତନତା ଅଭିଯାନ ପାଇଁ ସାମାଜିକ କଲ୍ୟାଣ ବୋର୍ଡ଼କୁ ସହାୟତା ନିମନ୍ତେ ୩୯ କୋଟି ଟଙ୍କା ପ୍ରଦାନ କରାଯାଇଛି ।

**୮.୬ ଅନୁସୂଚିତ ଜନଜାତି ଓ ଜାତି ଉନ୍ନୟନ**

ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ଉନ୍ନୟନ ଏବଂ ସଂଖ୍ୟାଲଘୁ ଓ ପଛୁଆବର୍ଗ କଲ୍ୟାଣ ପାଇଁ ମୋଟ ୧୧୩୬ କୋଟି ଟଙ୍କା ବ୍ୟୟବରାଦ କରାଯାଇଛି ।

- ଅନୁସୂଚିତ ଜନଜାତି ଛାତ୍ରଛାତ୍ରୀ ଶିକ୍ଷା ଯୋଜନା (Umbrella Scheme for Education of ST Students) ନିମନ୍ତେ ୭୩ କୋଟି ଟଙ୍କା ବ୍ୟୟବରାଦ କରାଯାଇଛି ।
- ଅନୁସୂଚିତ ଜାତିଙ୍କ ବିକାଶ ନିମନ୍ତେ ୫୩ କୋଟି ଟଙ୍କା ବ୍ୟୟବରାଦ କରାଯାଇଛି ।
- ସ୍ୱତନ୍ତ୍ର ବିକାଶ ପରିଷଦ (Special Development Council) ପାଇଁ ୨୨୪ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ଉନ୍ନୟନ ପାଇଁ ଗୃହ ନିର୍ମାଣ ନିମନ୍ତେ ୩୮୫ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- ପ୍ରାକ୍‌–ମ୍ୟାଟ୍ରିକ୍ ସ୍କଲାରସିପ୍ ପାଇଁ ୯୭ କୋଟି ଟଙ୍କା ଏବଂ ମୁଖ୍ୟମନ୍ତ୍ରୀ ମେଧାବୀ ଛାତ୍ର ପ୍ରୋତ୍ସାହନ ଯୋଜନା ଅଧୀନରେ ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ଛାତ୍ରମାନଙ୍କ ପାଇଁ ପୋଷ୍ଟ–ମ୍ୟାଟ୍ରିକ୍ ସ୍କଲାରସିପ୍ ନିମନ୍ତେ ୧୨୫ କୋଟି ଟଙ୍କା ପ୍ରଦାନ କରାଯାଇଛି ।

**୮.୭ ଶିକ୍ଷା, କ୍ରୀଡ଼ା ଓ ଦକ୍ଷତା ବିକାଶ**

ଶିକ୍ଷା, କ୍ରୀଡ଼ା ଓ ଦକ୍ଷତା ବିକାଶ କ୍ଷେତ୍ର ପାଇଁ ମୋଟ ୩୬୫୧ କୋଟି ଟଙ୍କା ବ୍ୟୟବରାଦ କରାଯାଇଛି ।

- ମଧ୍ୟାହ୍ନ ଭୋଜନ(PM POSHAN) ଅଧୀନରେ ରାଜ୍ୟ ସହାୟତା ପାଇଁ ୧୬୪ କୋଟି ପ୍ରଦାନ କରାଯାଇଛି ।
- ମୋ ସ୍କୁଲ ଅଭିଯାନ ପାଇଁ ୨୧୨ କୋଟି ଟଙ୍କା ଏବଂ ଓଡିଶା ଆଦର୍ଶ ବିଦ୍ୟାଳୟ ପାଇଁ ୧୦୫.୫୪ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- ଅଣ–ସରକାରୀ ଉଚ୍ଚ ବିଦ୍ୟାଳୟ ପାଇଁ ୬୦୦ କୋଟି ଟଙ୍କା ଏବଂ ସରକାରୀ ଉଚ୍ଚ ବିଦ୍ୟାଳୟ ପାଇଁ ୬୪ କୋଟି ଟଙ୍କା ପ୍ରଦାନ କରାଯାଇଛି ।

- Samagra Sikshya ପାଇଁ ରାଜ୍ୟ ସହାୟତା ବାବଦରେ ୩୮୨ କୋଟି ଟଙ୍କା ଏବଂ ମୁଖ୍ୟମନ୍ତ୍ରୀ ଛାତ୍ର–ଛାତ୍ରୀ ପରିଧାନ ଯୋଜନା ପାଇଁ ୧୧୦ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- ବିଶ୍ୱବିଦ୍ୟାଳୟ ଏବଂ କଲେଜଗୁଡ଼ିକର ଭିତ୍ତିଭୂମି ବିକାଶ ପାଇଁ ୨୩୦ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- ଅଣ–ସରକାରୀ କଲେଜଗୁଡିକ ନିମନ୍ତେ GIA ବାବଦରେ ୩୦୮ କୋଟି ଟଙ୍କା ପ୍ରଦାନ କରାଯାଇଛି
- Engineering Schools / Polytechnics ଗୁଡିକର ଭିତ୍ତିଭୂମି ବିକାଶ ପାଇଁ ୧୦୦ କୋଟି ଟଙ୍କା ବ୍ୟୟବରାଦ କରାଯାଇଛି ।

### ୮.୮ ଗ୍ରାମ୍ୟ ଉନ୍ନୟନ

ଗ୍ରାମ୍ୟ ଭିତ୍ତିଭୂମି ବିକାଶ ପାଇଁ ମୋଟ ୫୫୮ କୋଟି ଟଙ୍କା ବ୍ୟୟବରାଦ କରାଯାଇଛି, ଯେଉଁଥିରେ ପ୍ରଧାନ ମନ୍ତ୍ରୀ ଗ୍ରାମ ସଡକ ଯୋଜନା (PMGSY) ପାଇଁ ୫୫୦ କୋଟି ଟଙ୍କା ପ୍ରଦାନ କରାଯାଇଛି ।

### ୮.୯ ସହରାଞ୍ଚଳ ଉନ୍ନୟନ

ସହାରାଞ୍ଚଳ ଉନ୍ନୟନ ପାଇଁ ମୋଟ ୧୦୪୬ କୋଟି ଟଙ୍କା ବ୍ୟୟବରାଦ କରାଯାଇଛି ।

- ଓଡିଶା ସହରାଞ୍ଚଳ ଭିତ୍ତିଭୂମି ବିକାଶ ପାଣ୍ଠି ପାଇଁ ୧୦୦ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- ସହରାଞ୍ଚଳ ପ୍ରଶାସନର ଉନ୍ନତି ପାଇଁ ୫୮୫ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- Smart CITY ଯୋଜନା ଅଧୀନରେ ୧୦୦ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- ମେଟ୍ରୋ ରେଳ ସମେତ ସହରାଞ୍ଚଳ ସଡକ ପରିବହନ ଅଧୀନରେ ୨୬୦ କୋଟି ଟଙ୍କା ପ୍ରଦାନ କରାଯାଇଛି ।

### ୮.୧୦ ଶିଳ୍ପ

ଶିଳ୍ପ ଏବଂ MSME କ୍ଷେତ୍ର ପାଇଁ ମୋଟ ୩୨୦୫ କୋଟି ଟଙ୍କା ଆବଣ୍ଟନ କରାଯାଇଛି ।

- ଶିଳ୍ପ ଭିତ୍ତିଭୂମି ବିକାଶ ପାଣ୍ଠି (IIDF) ପାଇଁ ୧୦୦ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- Industrial Policy Resolution (IPR) ଅଧୀନରେ VAT/GST reimbursement Subsidy ନିମନ୍ତେ ୧୬୮ କୋଟି ଟଙ୍କା ପ୍ରଦାନ କରାଯାଇଛି ।

### ୮.୧୧ ଭିତ୍ତିଭୂମି

ଭିତ୍ତିଭୂମି ବିକାଶ ପାଇଁ ୧୬୩୧ କୋଟି ଟଙ୍କା ଆବଣ୍ଟନ କରାଯାଇଛି ।

- ଶକ୍ତି ବିଭାଗ ଅଧୀନରେ ଥିବା ସରକାରୀ ଉଦ୍ୟୋଗଗୁଡିକ ନିମନ୍ତେ ଋଣ ବାବଦକୁ ୨୫୫ କୋଟି ଟଙ୍କା ପ୍ରଦାନ କରାଯାଇଛି ।

- ସୂଚନା ପ୍ରଯୁକ୍ତିବିଦ୍ୟା ଭିତ୍ତିଭୂମି ଏବଂ ସଂଯୋଗୀକରଣ ବିକାଶ ପାଇଁ ୧୫୩ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- ବସ୍ ଟର୍ମିନାଲ୍ ଏବଂ ଆନୁଷଙ୍ଗିକ ଭିତ୍ତିଭୂମି ପାଇଁ ୫୫ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- EV Policy ଅଧୀନରେ ସବସିଡି ବାବଦକୁ ୪୫ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- ଏରୋଡ୍ରମ୍ ନିର୍ମାଣ ପାଇଁ ସବସିଡି ବାବଦକୁ ୫୦ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- 'Location Accessible Multi-modal Initiative' (LAccMI) ଯୋଜନା ପାଇଁ ୫୫୬ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- Odisha Space Applications Centre (ORSAC) ଅଧୀନରେ ବୈଜ୍ଞାନିକ ଅନୁସନ୍ଧାନ ପାଇଁ ୧୦.୩ କୋଟି ଟଙ୍କା ପ୍ରଦାନ କରାଯାଇଛି ।

**୮.୧୨ ସଂସ୍କୃତି ଓ ପର୍ଯ୍ୟଟନର ବିକାଶ**

ସଂସ୍କୃତି ଓ ପର୍ଯ୍ୟଟନର ବିକାଶ ପାଇଁ ମୋଟ ୨୬୪ କୋଟି ଟଙ୍କା ବ୍ୟୟବରାଦ କରାଯାଇଛି ।

- ମୁଖ୍ୟମନ୍ତ୍ରୀ କଳାକାର ସହାୟତା ଯୋଜନା ପାଇଁ ୧୪ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- ସଂସ୍କୃତି ନିର୍ଦ୍ଦେଶାଳୟ ପାଇଁ ୭୧ କୋଟି ଟଙ୍କା ପ୍ରଦାନ କରାଯାଇଛି ।
- ବରିଷ୍ଠ ନାଗରିକ ତୀର୍ଥଯାତ୍ରା ଯୋଜନା ପାଇଁ ୨୫ କୋଟି ଟଙ୍କା ଏବଂ ପର୍ଯ୍ୟଟନ ପ୍ରଚାର ପ୍ରସାର ପାଇଁ ୧୪୩ କୋଟି ଟଙ୍କା ପ୍ରଦାନ କରାଯାଇଛି ।

**୯. FRBM ପରିପାଳନ ଏବଂ ଅତିରିକ୍ତ ବଜେଟ, ୨୦୨୩-୨୪**

ଅତିରିକ୍ତ ବଜେଟ ୨୦୨୩-୨୪, ବିତ୍ତୀୟ ଉତ୍ତରଦାୟିତ୍ୱ ଏବଂ ବଜେଟ୍ ପରିଚାଳନା (FRBM) ଅଧିନିୟମକୁ ଅନୁପାଳନ କରୁଛି, କାରଣ ଏହି ବଜେଟ୍ ଅତିରିକ୍ତ ରାଜସ୍ୱ କିମ୍ବା ସଞ୍ଚିତ/ ସମର୍ପିତ ସମ୍ବଳର ଉପଲବ୍ଧତା ମଧ୍ୟରେ ପ୍ରସ୍ତୁତ କରାଯାଇଛି । ଏହି ଅତିରିକ୍ତ ବଜେଟ୍ ସହ ରାଜସ୍ୱ ବଳକା (Revenue Surplus) ସ୍ଥିତି ବଜାୟ ରହିବ ଏବଂ ବିତ୍ତୀୟ ନିଅଣ୍ଟ (Fiscal Deficity) ସାମଗ୍ରିକ ରାଜ୍ୟ ଘରୋଇ ଉତ୍ପାଦ (GSDP) ର ୩ ପ୍ରତିଶତ ମଧ୍ୟରେ ସୀମିତ ରହିବ । ଋଣ ଓ ସାମଗ୍ରିକ ରାଜ୍ୟ ଘରୋଇ ଉତ୍ପାଦ (GSDP)ର ଅନୁପାତ ସ୍ଥିରୀକୃତ ୨୫ ପ୍ରତିଶତ ମଧ୍ୟରେ ସୀମିତ ରହିବାର ମଧ୍ୟ ଅନୁମାନ କରାଯାଉଛି । ମହାଲେଖାକାରଙ୍କଠାରୁ ମିଳିଥିବା ତଥ୍ୟ ଅନୁଯାୟୀ, ଜୁଲାଇ, ୨୦୨୩ ପର୍ଯ୍ୟନ୍ତ ରାଜ୍ୟର ଋଣ ଭାର ରାଜ୍ୟ ସକଳ ଘରୋଇ ଉତ୍ପାଦର ଅନୁପାତ (Debt-GSDP ratio) ୧୦.୨୭ ପ୍ରତିଶତ ରହିଅଛି ଏବଂ ସୁଧ ଦେୟ ଓ ରାଜସ୍ୱ ଆୟର ଅନୁପାତ IP/RR ratio ୧.୯୪ ପ୍ରତିଶତରେ ସୀମିତ ରହିଛି, ଯାହାକି ପୋଷଣୀୟ ଅଟେ । ଅତିରିକ୍ତ ବଜେଟକୁ ମିଶାଇ ୨୦୨୩-୨୪ ଆର୍ଥିକ ବର୍ଷରେ ପୁଞ୍ଜି ନିବେଶ (Capital Outlay) ସାମଗ୍ରିକ ରାଜ୍ୟ ଘରୋଇ ଉତ୍ପାଦ (GSDP)ର ୬ ପ୍ରତିଶତରୁ ଅଧିକ ହେବ । ଏହା ଅର୍ଥନୈତିକ ଅଭିବୃଦ୍ଧିରେ ସହାୟକ ହେବା ସହ ରାଜ୍ୟର ବିବିଧ ଜନମଙ୍ଗଳ ତଥା ବିକାଶ ମୂଳକ କାର୍ଯ୍ୟକ୍ରମକୁ ଆଗକୁ ନେବାରେ ସହାୟକ ହେବ ।

## 10. 2023-24 ବଜେଟ୍ ଅଟକଳ ଓ ଅତିରିକ୍ତ ବଜେଟ୍ ରେ ବିଭାଗୱାରୀ ନିଟ୍ ବ୍ୟୟ ବରାଦ

(କୋଟି ଟଙ୍କା ହିସାବରେ)

| ଦାବୀ ନଂ | ବିଭାଗ | 2023-24 (ବଜେଟ୍ ଅଟକଳ) | ଅତିରିକ୍ତ ବ୍ୟୟ ବରାଦ |
|---|---|---|---|
| (୧) | (୨) | (୩) | (୪) |
| 1. | ସ୍ୱରାଷ୍ଟ୍ର ବିଭାଗ | 7313.61 | 780.83 |
| 2. | ସାଧାରଣ ପ୍ରସାଶନ ଓ ସାଧାରଣ ଅଭିଯୋଗ | 544.49 | 76.19 |
| 3. | ରାଜସ୍ୱ ଓ ବିପର୍ଯ୍ୟୟ ପରିଚାଳନା ବିଭାଗ | 1586.72 | 31.74 |
| 4. | ଆଇନ ବିଭାଗ | 816.43 | 14.33 |
| 5. | ଅର୍ଥ ବିଭାଗ | 61852.83 | 261.62 |
| 6. | ବାଣିଜ୍ୟ ବିଭାଗ | 175.93 | 4.10 |
| 7. | ନିର୍ମାଣ ବିଭାଗ | 9133.00 | 380.26 |
| 8. | ଓଡିଶା ବିଧାନ ସଭା | 194.94 | 0.20 |
| 9. | ଖାଦ୍ୟ ଯୋଗାଣ ଓ ଖାଉଟି କଲ୍ୟାଣ ବିଭାଗ | 1229.95 | 479.02 |
| 10. | ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗ | 22527.95 | 2881.84 |
| 11. | ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ଉନ୍ନୟନ ଏବଂ ସଂଖ୍ୟାଲଘୁ ସମ୍ପ୍ରଦାୟ ଓ ପଛୁଆବର୍ଗ କଲ୍ୟାଣ ବିଭାଗ | 4651.78 | 1355.09 |
| 12. | ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ | 15756.53 | 1327.18 |
| 13. | ଗୃହ ନିର୍ମାଣ ଓ ପୌର ଉନ୍ନୟନ ବିଭାଗ | 7913.82 | 1087.80 |
| 14. | ଶ୍ରମ ଓ ରାଜ୍ୟ କର୍ମଚାରୀ ବୀମା ବିଭାଗ | 218.65 | 53.80 |
| 15. | କ୍ରୀଡା ଓ ଯୁବସେବା ବିଭାଗ | 1217.18 | 320.98 |
| 16. | ଯୋଜନା ଓ ସଂଯୋଜନ ବିଭାଗ | 13103.70 | 3.16 |
| 17. | ପଞ୍ଚାୟତିରାଜ ଓ ପାନୀୟଜଳ ବିଭାଗ | 25318.55 | 4083.00 |
| 18. | ସାଧାରଣ ଅଭିଯୋଗ ଓ ପେନ୍‌ସନ୍ ପ୍ରଶାସନ | 2.50 | 0.03 |
| 19. | ଶିଳ୍ପ ବିଭାଗ | 710.20 | 317.93 |
| 20. | ଜଳ ସମ୍ପଦ ବିଭାଗ | 10775.36 | 2406.65 |
| 21. | ପରିବହନ ବିଭାଗ | 1287.58 | 748.29 |
| 22. | ଜଙ୍ଗଲ, ପରିବେଶ ଓ ଜଳବାୟୁ ପରିବର୍ତ୍ତନ ବିଭାଗ | 1156.27 | 225.05 |
| 23. | କୃଷି ଓ କୃଷକ ସଶକ୍ତିକରଣ ବିଭାଗ | 6935.89 | 673.39 |
| 24. | ଇସ୍ପାତ ଓ ଖଣି ବିଭାଗ | 292.42 | 33.51 |
| 25. | ସୂଚନା ଓ ଲୋକ ସଂପର୍କ ବିଭାଗ | 137.77 | 50.45 |
| 26. | ଅବକାରୀ ବିଭାଗ | 175.68 | 24.76 |

| ଦାବୀ ନଂ | ବିଭାଗ | 2023-24 (ବଜେଟ୍ ଅଟକଳ) | ଅତିରିକ୍ତ ବ୍ୟୟ ବରାଦ |
|---|---|---|---|
| (୧) | (୨) | (୩) | (୪) |
| 27. | ବିଜ୍ଞାନ ଓ ବୈଷୟିକ ବିଭାଗ | 119.08 | 11.41 |
| 28. | ଗ୍ରାମ୍ୟ ଉନ୍ନୟନ ବିଭାଗ | 7500.00 | 897.07 |
| 29. | ସଂସଦୀୟ ବ୍ୟାପାର ବିଭାଗ | 81.81 | 14.33 |
| 30. | ଶକ୍ତି ବିଭାଗ | 3002.53 | 257.39 |
| 31. | ହସ୍ତତନ୍ତ, ବୟନଶିଳ୍ପ ଓ ବିଭାଗ | 219.49 | 67.36 |
| 32. | ପର୍ଯ୍ୟଟନ ବିଭାଗ | 680.02 | 175.93 |
| 33. | ମତ୍ସ୍ୟ ଓ ପଶୁ ସମ୍ପଦ ଉନ୍ନୟନ ବିଭାଗ | 1769.29 | 381.86 |
| 34. | ସମବାୟ ବିଭାଗ | 1936.01 | 605.46 |
| 35. | ସରକାରୀ ଉଦ୍ୟୋଗ ବିଭାଗ | 11.60 | 0.01 |
| 36. | ମହିଳା ଓ ଶିଶୁ ବିକାଶ ବିଭାଗ | 3670.00 | 472.56 |
| 37. | ଇଲେକ୍ଟ୍ରୋନିକ୍ସ ଓ ସୂଚନା ପ୍ରଯୁକ୍ତିବିଦ୍ୟା ବିଭାଗ | 355.55 | 247.74 |
| 38. | ଉଚ୍ଚ ଶିକ୍ଷା ବିଭାଗ | 3172.87 | 841.55 |
| 39. | ଦକ୍ଷତା ବିକାଶ ଓ ବୈଷୟିକ ଶିକ୍ଷା ବିଭାଗ | 986.26 | 215.83 |
| 40. | ଅଣୁ, କ୍ଷୁଦ୍ର ଓ ମଧ୍ୟମ ଉଦ୍ୟୋଗ ବିଭାଗ | 647.77 | 2.86 |
| 41. | ସାମାଜିକ ସୁରକ୍ଷା ଓ ଭିନ୍ନକ୍ଷମ ସଶକ୍ତିକରଣ ବିଭାଗ | 4298.76 | 787.32 |
| 42. | ବିପର୍ଯ୍ୟୟ ପରିଚାଳନା | 3764.28 | 4697.62 |
| 43. | ଓଡିଆ ଭାଷା, ସାହିତ୍ୟ ଓ ସଂସ୍କୃତି ବିଭାଗ | 200.60 | 101.95 |
| 44. | ମିଶନ ଶକ୍ତି ବିଭାଗ | 2554.33 | 783.16 |
| | ସର୍ବ ମୋଟ | 2,30,000.00 | 28,200.00 |

# ସମ୍ପାଦକୀୟ



ପୃଥିବୀରେ ଅଳ୍ପ ଯେଉଁ କେତେକ ଦେଶ ଚନ୍ଦ୍ର ଅଭିଯାନରେ ସଫଳତା ପାଇଛନ୍ତି ତନ୍ମଧ୍ୟରୁ ଭାରତବର୍ଷ ଅନ୍ୟତମ । ଆମେ ଭାରତୀୟ ଭାବରେ ଏଥିପାଇଁ ନିଶ୍ଚୟ ଗର୍ବିତ । ଯୁକ୍ତିଯୁକ୍ତ ବିଚାରଧାରା, ବୈଜ୍ଞାନିକ ମନୋଭାବ ଏବଂ ବୈଜ୍ଞାନିକ ତଥ୍ୟ ଓ ପ୍ରଯୁକ୍ତିବିଦ୍ୟାର ଅଭିବୃଦ୍ଧି ପୃଥିବୀକୁ ବିକାଶ ପଥରେ ଆଗେଇ ନେବାରେ ସାହାଯ୍ୟ କରିଛି । ଏହା ଚିନ୍ତାର ବିଷୟ ଯେ, ଏ ସବୁ ସତ୍ତ୍ୱେ ମଧ୍ୟ ଆମେ ନିଜ ପ୍ରତି ଅମାନବିକତା ଦେଖେଇ ଚାଲିଛୁ । ଧନୀ ଏବଂ ଶକ୍ତିଶାଳୀ ବ୍ୟକ୍ତି ତଥା ରାଷ୍ଟ୍ରମାନଙ୍କ ଦ୍ୱାରା ଯୁଦ୍ଧ, ଗଣହତ୍ୟା ଏବଂ ମାନବିକ ଅଧିକାରକୁ କ୍ଷୁଣ୍ଣ କରିବା ଏକ ନିରନ୍ତର ବିପଦ ସୃଷ୍ଟି କରିଛି । ଯେଉଁ ସଭ୍ୟତା ପାଇଁ ଆମେ ଗର୍ବ ଅନୁଭବ କରୁଛୁ, ତାହାର ବିନାଶକୁ ଆମେ ନିମନ୍ତ୍ରଣ କରୁଛୁ । ଆମେ ଶାନ୍ତି ଚାହୁଁ, ଆମେ ସହାବସ୍ଥାନ ଚାହୁଁ କାରଣ ଭବିଷ୍ୟତରେ ଏକାଠି ବଞ୍ଚିବା ପାଇଁ ଆମକୁ ସମଗ୍ର ମାନବଜାତିର ସମର୍ଥନ ଆବଶ୍ୟକ । ପରସ୍ପର ନିର୍ଭରଶୀଳତାର ଅର୍ଥ ଆମେ ବୁଝିପାରିଛୁ । ଆମେ ଜାଣୁ ଯେ, ଆମକୁ ଏକାଠି ଜୀବନ ଏବଂ ଜୀବିକା ନିର୍ବାହ କରିବାକୁ ପଡ଼ିବ । ସାରା ବିଶ୍ୱ ଗୋଟିଏ ପରିବାର ବୋଲି ଆମେ ବିଶ୍ୱାସ କରୁ ।

ଆମେ ଅଧିକାଂଶ ଭାରତୀୟମାନେ 'ବସୁଧୈବ କୁଟୁମ୍ବକମ୍' କଥାକୁ ମର୍ମେ ମର୍ମେ ଅନୁଭବ କରିଛୁ । 'ବସୁଧୈବ କୁଟୁମ୍ବକମ୍' ଭାରତୀୟ ଦର୍ଶନର ଏକ ଗୁରୁତ୍ୱପୂର୍ଣ୍ଣ ଅଂଶ, ଯାହା ପୃଥିବୀକୁ ଏକ ପରିବାର ଭାବରେ ସ୍ୱୀକାର କରେ । ଏହା ହେଉଛି ଏକ ସମ୍ପର୍କର ବିଷୟ, ଯାହା ବିଶ୍ୱରେ ଭାଇଚାରା ଏବଂ ସଦ୍‌ଭାବନାର ଭାରତୀୟ ଦର୍ଶନକୁ ପ୍ରତିଫଳିତ କରେ । ବାସ୍ତବରେ ଆମେ ଗୋଟିଏ ପରିବାର । ଯେତେବେଳେ ସମଗ୍ର ବିଶ୍ୱ କୋଭିଡ୍–୧୯ ବିପଦରେ ଆକ୍ରାନ୍ତ ଥିଲା, ସେତେବେଳେ ବିଶ୍ୱର ସମସ୍ତ ରାଷ୍ଟ୍ର ଏକ ହୋଇ ସହଯୋଗ କରିଥିଲେ ଏବଂ ସମାଧାନର ପନ୍ଥା ମଧ୍ୟ ବାହାର କରିଥିଲେ । ସେହି ବିପଜ୍ଜନକ ପରିସ୍ଥିତିକୁ ସମସ୍ତେ ମିଳିମିଶି ମୁକାବିଲା କରିଥିଲେ ।

ହୀନ ରାଜନୀତି, ଧର୍ମାନ୍ଧତା, ଏକଛତ୍ରବାଦୀର ଅହଂକାର, ଏ ସବୁ ମଣିଷ ମନ ଓ ସମ୍ବେଦନଶୀଳତା ଉପରେ ନକାରାତ୍ମକ ପ୍ରଭାବ ପକାଉଛି । ଗୋଟିଏ ଜାତିର ଅନ୍ୟ ଜାତି ଉପରେ ଭୁଲ ଆଧିପତ୍ୟ ପାଇଁ ପ୍ରତିସ୍ପର୍ଦ୍ଧା ସର୍ବଦା ବିଶ୍ୱ ଶାନ୍ତି ପାଇଁ ବିପଦ ହୋଇ ଆସିଛି । ଦ୍ୱିତୀୟ ବିଶ୍ୱଯୁଦ୍ଧର ସର୍ବଗ୍ରାସୀ ବିନାଶ ଓ ଅବକ୍ଷୟ

ପରେ ମିଳିତ ଜାତିସଂଘ ଗଠନ ପୃଥିବୀକୁ ଏକତାର ଡୋରରେ ବାନ୍ଧିବା ପାଇଁ ଗୋଟିଏ ପାଦ ଆଗେଇ ନେଇଥିଲା । କିନ୍ତୁ ଆମେ ଏବେ ବି ଯୁଦ୍ଧ ଏବଂ ବିନାଶ କରୁଛୁ । ଏହା ମିଳିତ ଜାତିସଂଘର ସୀମିତ ଉପଯୋଗିତା ଦର୍ଶାଉଛି ।

କିନ୍ତୁ, ଆମ ପାଖରେ ସବୁବେଳେ ଆମର ଏହି ସମସ୍ୟାର ସମାଧାନ ଥିଲା । ମଣିଷ, ଗାଁ, ରାଜ୍ୟ ଏବଂ ବର୍ତ୍ତମାନ ଦେଶ ଦେଶ ମଧ୍ୟରେ ବାଣିଜ୍ୟ ଦ୍ୱାରା ଏହାର ନିରାକରଣ କରିବା ସମ୍ଭବ ଥିଲା । ଅଧିକାଂଶ ସ୍ଥାନରେ ଲୋକେ ବ୍ୟବସାୟୀଙ୍କୁ ଭଲ ପାଉଥିଲେ କାରଣ ସେମାନେ ନିଜ ଜୀବନକୁ ମଧ୍ୟ ବିପଦରେ ପକାଇ ଲୋକଙ୍କ ଆବଶ୍ୟକତା ଅନୁଯାୟୀ ଜିନିଷ ଯୋଗାଇ ଦେଉଥିଲେ । ବିଭିନ୍ନ ସ୍ଥାନର ଲୋକେ ପରସ୍ପରକୁ ଜାଣିଲେ, ସୂଚନା ବାଣ୍ଟିଲେ ଏବଂ ମୂଲ୍ୟବୋଧ ଓ ଜୀବନଶୈଳୀ ପରସ୍ପର ମଧ୍ୟରେ ଆଦାନ ପ୍ରଦାନ କଲେ । ଏହି ବିବିଧତା ମଧ୍ୟରେ ଏକତା ହିଁ ସମୃଦ୍ଧିର ସାର ଥିଲା । ବାହାର ଲୋକଙ୍କୁ ସ୍ୱାଗତ କରିବା ପଛରେ ଏହି 'ବସୁଧୈବ କୁଟୁମ୍ବକମ୍' ଚିନ୍ତାଧାରା ରହିଥିଲା । ଆଜିର ଦୁନିଆରେ ଆମେ ଜାଣିଛୁ କାହା ପାଖରେ କ'ଣ ଓ କେତେ ପରିମାଣରେ ରହିଛି । ତେଣୁ ଆମେ ବାଣିଜ୍ୟ ଦ୍ୱାରା ଅତିରିକ୍ତ ଏବଂ ଅଭାବକୁ ଅନ୍ୟ ଦେଶମାନଙ୍କ ସହିତ ବାଣ୍ଟିଥାଉ । ସୀମାରେ ଉତ୍ତେଜନା ଲାଗି ରହିଥିଲେ ମଧ୍ୟ ସୀମାନ୍ତ ଗ୍ରାମବାସୀ ସୀମାପାର ହୋଇ ବେପାର କରିଥାନ୍ତି ।

ଯେତେବେଳେ ବ୍ୟବସାୟ ବୃଦ୍ଧି ପାଏ, ସେତେବେଳେ ପଡ଼ୋଶୀଙ୍କ ସହ ଯୁଦ୍ଧର ଉପଯୋଗିତା କମ୍ ହୋଇଯାଏ । ବାଣିଜ୍ୟ ଏପରି ପରିବେଶ ସୃଷ୍ଟି କରେ, ଯାହା କେବଳ ପାରସ୍ପରିକ ସହଯୋଗରେ ସମ୍ଭବ, ଯେହେତୁ ପ୍ରତ୍ୟେକ କ୍ଷେତ୍ରରେ ସ୍ଥାନୀୟ ସ୍ତରରେ ସେହି ସୁବିଧା ବା ପଦାର୍ଥ ଉପଲବ୍ଧ ହୋଇପାରେ ନାହିଁ । ଆମଦାନୀ ଏବଂ ରପ୍ତାନି ହେଉଛି ଦୁଇଟି ପାଦ, ଯାହା ଉପରେ ମାନବ ଜାତିର ବିକାଶ ଦୃଢ଼ତାର ସହ ଚାଲିଥାଏ । ଗୋଟିଏ ପରିବାରର ସଦସ୍ୟଙ୍କ ଭଳି ଆମେ ତାହା କରିଥାଉ । ଆମେ ପରସ୍ପରର ଜୀବନରେ ଅଂଶୀଦାର ହେଉ, ବାଣିଜ୍ୟ ବ୍ୟବସାୟ କରୁ ଏବଂ ମିଳିମିଶି ଆଗକୁ ବଢ଼ିଥାଉ ।

ଚଳିତ ବର୍ଷ ଭାରତ ଆନ୍ତର୍ଜାତିକ ବାଣିଜ୍ୟ ମେଳା (ଆଇଆଇଟିଏଫ୍)ର ବିଷୟ ବସ୍ତୁ ହେଉଛି 'ବସୁଧୈବ କୁଟୁମ୍ବକମ୍ : ୟୁନାଇଟେଡ୍ ବାଇ ଟ୍ରେଡ୍' । ଏହା ୨୦୨୩ ନଭେମ୍ବର ୧୪ ତାରିଖରେ ନୂଆଦିଲ୍ଲୀର ପ୍ରଗତି ମଇଦାନରେ ଉଦ୍‌ଘାଟିତ ହୋଇଯାଇଛି । ଏହି ବିଷୟବସ୍ତୁ ବିଭିନ୍ନ କ୍ଷେତ୍ରରେ ଭାରତର ପ୍ରାଚୀନ ଜ୍ଞାନ ଏବଂ ଶକ୍ତି, ଦୃଷ୍ଟିକୋଣ, ପ୍ରମୁଖ ସାମାଜିକ-ଅର୍ଥନୈତିକ ପ୍ରସଙ୍ଗ ଉପରେ ମତାମତ ଏବଂ ବିଶ୍ୱ ଅର୍ଥନୈତିକ ନୀତିକୁ ଆକାର ଦେବାରେ ସୁଯୋଗ ସୃଷ୍ଟି କରେ । ଏହା ମଣିଷ ସମାଜର ସ୍ଥାୟୀ ଅଭିବୃଦ୍ଧି ଏବଂ କଲ୍ୟାଣ ହାସଲ ପାଇଁ ବାଣିଜ୍ୟରେ ଆନ୍ତଃସଂଯୋଗ ଏବଂ ସହଯୋଗର ଗୁରୁତ୍ୱ ପ୍ରତି ନିର୍ଦ୍ଦେଶ କରିଛି । ଭାରତୀୟଙ୍କ ଉତ୍ପାଦ ପ୍ରଦର୍ଶନ ଏବଂ ଭାରତୀୟ ଅର୍ଥନୀତିରେ ନୂତନ ଆତ୍ମବିଶ୍ୱାସ ଏବଂ ଉତ୍ସାହ ସୃଷ୍ଟି କରିବା ପାଇଁ ଏହା ଏକ ଆଦର୍ଶ ସୁଯୋଗ ।

ସମଗ୍ର ପୃଥିବୀର ବାସିନ୍ଦାଙ୍କ କଲ୍ୟାଣ ପାଇଁ ବିଶ୍ୱ ସୌହାର୍ଦ୍ଦ୍ୟ, ସହଯୋଗ ଏବଂ ଅଂଶୀଦାର ଦାୟିତ୍ୱବୋଧର ଭାବନାକୁ ପ୍ରୋତ୍ସାହିତ କରିବା ସହିତ ସମସ୍ତ ଲୋକ ଏବଂ ରାଷ୍ଟ୍ରର ପରସ୍ପର ସହ ସମ୍ପର୍କ ଏବଂ ଏକତା ଉପରେ ଗୁରୁତ୍ୱାରୋପ କରେ ।

ଚଳିତ ବର୍ଷ ପ୍ରଦର୍ଶନୀରେ ସମସ୍ତ ରାଜ୍ୟ ଓ କେନ୍ଦ୍ରଶାସିତ ଅଞ୍ଚଳ ଏବଂ ୧୩ଟି ଦେଶର ପ୍ରତିନିଧି ସକ୍ରିୟ ଭାବେ ଅଂଶଗ୍ରହଣ କରୁଛନ୍ତି । ୪୬ଟି କେନ୍ଦ୍ରୀୟ ମନ୍ତ୍ରଣାଳୟ/ରାଷ୍ଟ୍ରାୟତ୍ତ ଉଦ୍ୟୋଗର ଅଂଶଗ୍ରହଣରେ ନିଜ ନିଜ କ୍ଷେତ୍ରର ସଫଳତା ପ୍ରଦର୍ଶିତ କରୁଛନ୍ତି ।

ଏହି ବାଣିଜ୍ୟ ମେଳାର ୪୨ତମ ସଂସ୍କରଣରେ ଓଡ଼ିଶାର ସାମାଜିକ ସୁରକ୍ଷା ଓ ଭିନ୍ନକ୍ଷମ ସଶକ୍ତିକରଣ, ସାଧାରଣ ଉଦ୍ୟୋଗ ଏବଂ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ମନ୍ତ୍ରୀ ଶ୍ରୀ ଅଶୋକ ଚନ୍ଦ୍ର ପଣ୍ଡା ୧୪ ନଭେମ୍ବର ୨୦୨୩ରେ ନୂଆଦିଲ୍ଲୀର ପ୍ରଗତି ମଇଦାନରେ ଓଡିଶା ମଣ୍ଡପକୁ ଉଦ୍‌ଘାଟନ କରିଛନ୍ତି । ଚଳିତ ବର୍ଷ ମେଳାର ବିଷୟବସ୍ତୁ 'ବସୁଧୈବ କୁଟୁମ୍ବକମ୍ : ୟୁନାଇଟେଡ୍ ବାଇ ଟ୍ରେଡ୍' ରହିଥିବା ବେଳେ ଓଡିଶା ମଣ୍ଡପ ଉତ୍କଳୀୟ ନୌବାଣିଜ୍ୟ ପରମ୍ପରାର ବୈଭବ ନେଇ ଅଂଶଗ୍ରହଣ କରିଛି । ଓଡ଼ିଶା ମଣ୍ଡପ ବାଣିଜ୍ୟ ମାଧ୍ୟମରେ ଏକତା ଭାବନାର ପରିଚୟ ଦେଉଛି । ଏଥିରେ ରାଜ୍ୟର ୭ ଗୋଟି ବିଭାଗର ୨୪ ଗୋଟି ଷ୍ଟଲ୍ ରହିଛି । ଏଥିରେ ରାଜ୍ୟର ମଣ୍ଡପରେ ଆଦିବାସୀ ଗୋଷ୍ଠୀଙ୍କ ଦୃଢ଼ ପ୍ରତିନିଧିତ୍ୱ ରହିଛି ଏବଂ ଏହି ପ୍ରଦର୍ଶନୀର ଏକ ପ୍ରମୁଖ ଆକର୍ଷଣ ହେଉଛି ସମଗ୍ର ଉତ୍ପାଦନ ପ୍ରକ୍ରିୟାରେ ଅଗ୍ରଣୀ ଥିବା ମହିଳାଙ୍କ ସକ୍ରିୟ ଅଂଶଗ୍ରହଣ ।

ମିଶନ ଶକ୍ତି କାର୍ଯ୍ୟକ୍ରମ ଅନୁଯାୟୀ, ଏଥିରେ ମହିଳା ସଶକ୍ତିକରଣ, ଲିଙ୍ଗଗତ ସମାନତା ପ୍ରତି ରାଜ୍ୟର ପ୍ରତିବଦ୍ଧତା ଏବଂ ଅର୍ଥନୈତିକ ଅଭିବୃଦ୍ଧିରେ ମହିଳାଙ୍କ କେନ୍ଦ୍ରୀୟ ଭୂମିକାକୁ ଦର୍ଶାଯାଇଛି । ଏହି ପ୍ରଦର୍ଶନୀର ଏକ ପ୍ରମୁଖ ଆକର୍ଷଣ ହେଉଛି ସମଗ୍ର ଉତ୍ପାଦନ ପ୍ରକ୍ରିୟାରେ ଅଗ୍ରଣୀ ଥିବା ମହିଳାଙ୍କ ସକ୍ରିୟ ଅଂଶଗ୍ରହଣ । ମହିଳା ଓ ଗ୍ରାମୀଣ ଉଦ୍ୟୋଗୀଙ୍କୁ ସଶକ୍ତ କରିବା ପାଇଁ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ଦୃଷ୍ଟିକୋଣ ଅନୁଯାୟୀ ଗ୍ରାମୀଣ ମହିଳା କାରିଗରଙ୍କ ଦ୍ୱାରା ପ୍ରସ୍ତୁତ ସ୍ଥାନୀୟ ଉତ୍ପାଦ ପ୍ରଦର୍ଶନ କରାଯାଉଛି । ଏସବୁ ଏକ ସହଯୋଗୀ ପରିବେଶକୁ ପ୍ରୋତ୍ସାହିତ କରିବା ପାଇଁ ରାଜ୍ୟର ପ୍ରତିବଦ୍ଧତାକୁ ପ୍ରତିଫଳିତ କରେ, ଯେଉଁଠାରେ ବିବିଧ ସଂସ୍କୃତି ଥିବା ଗୋଷ୍ଠୀମାନେ ବାଣିଜ୍ୟ କରନ୍ତି । ଏହା ଏକ ସେତୁ ଭାବରେ କାର୍ଯ୍ୟ କରେ ।

'ପୁଷ୍ଟିଶସ୍ୟ' ପୁଷ୍ଟିକର ହୋଇଥିବାରୁ ଏହି ଫସଲ ସମ୍ପର୍କରେ ସଚେତନତା ସୃଷ୍ଟି ଲାଗି ଭାରତର ପ୍ରସ୍ତାବକ୍ରମେ ଜାତିସଂଘ ଚଳିତ ୨୦୨୩ ମସିହାକୁ 'ଅନ୍ତର୍ଜାତୀୟ ମିଲେଟ୍ ବର୍ଷ' ରୂପେ ପାଳନ କରୁଛି । ଏକଦା ଗରିବଙ୍କ ମୁଖ୍ୟ ଖାଦ୍ୟ ଭାବେ ପରିଗଣିତ ହେଉଥିବା ମାଣ୍ଡିଆ ଏବେ ସୁପରଫୁଡ୍ ଭାବେ ପରିଗଣିତ ହେଉଛି । ଓଡ଼ିଶା ହେଉଛି ପ୍ରଥମ ରାଜ୍ୟ, ଯିଏ ଏହି ଲକ୍ଷ୍ୟ ନେଇ ଏ ବର୍ଷ ନଭେମ୍ବର ମାସ ୯ ଏବଂ ୧୦ ତାରିଖରେ ଭୁବନେଶ୍ୱରଠାରେ ସମସ୍ତ ଅଂଶୀଦାରଙ୍କୁ ନେଇ ଦୁଇ ଦିନିଆ ଅନ୍ତର୍ଜାତୀୟ ମିଲେଟ୍ ସମ୍ମିଳନୀର ସଫଳ ଆୟୋଜନ କରିଥିଲା । ଆମ ଲୋକପ୍ରିୟ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ନେତୃତ୍ୱରେ ଓଡ଼ିଶା ସରକାର ଏହାର ଉଜ୍ଜ୍ୱଳ ସମ୍ଭାବନା ପରଖିଛନ୍ତି । ଏହି ସମ୍ମିଳନୀରେ ମିଲେଟ ବା ପୁଷ୍ଟିଶସ୍ୟର ଆଦିବାସୀ ଐତିହ୍ୟ, ମିଲେଟ ଉଦ୍ୟୋଗର ସଫଳତା କାହାଣୀ ଏବଂ ମିଲେଟ ଉତ୍ପାଦନ ଏବଂ ବ୍ୟବହାର କ୍ଷେତ୍ରରେ ଅତ୍ୟାଧୁନିକ ଜ୍ଞାନକୌଶଳ ଏବଂ ଉଦ୍ଭାବନଗୁଡିକ ପ୍ରଦର୍ଶିତ ହୋଇଥିଲା । ଜାତୀୟ ଏବଂ ଅନ୍ତର୍ଜାତୀୟ ଅତିଥିମାନଙ୍କୁ ସ୍ୱାଗତ କରି ଲୋକପ୍ରିୟ ଦୂରଦୃଷ୍ଟିସମ୍ପନ୍ନ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ କହିଥିଲେ ଯେ, ମିଲେଟ୍ ହେଉଛି ପାରମ୍ପରିକ ଶସ୍ୟ, ଜଳବାୟୁ ସହନଶୀଳ ଏବଂ ପୋଷଣର ଏକ ଶକ୍ତିଉତ୍ସ । ପୁଷ୍ଟିସାଧନ ନିରାପତ୍ତା ହାସଲ

କରିବାରେ ମିଲେଟ୍ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିପାରେ । ଆମ ସ୍ୱାସ୍ଥ୍ୟ, ପୁଷ୍ଟି, ପରିବେଶ ଏବଂ ପରିସଂସ୍ଥା ଲାଗି ମିଲେଟ୍‌ର ଉତ୍କର୍ଷ ବିଚାରକୁ ନେଇ ଏହାକୁ ଆଗାମୀ କାଲିର ଫସଲ ବୋଲି କୁହାଯାଉଛି । ମୁଖ୍ୟମନ୍ତ୍ରୀ ଆହୁରି କହିଛନ୍ତି ଯେ, ମହିଳାମାନେ ଆଗକୁ ବଢ଼ିବା ସହ ଉନ୍ନତି କରିଛନ୍ତି । ମାଣ୍ଡିଆର ପ୍ରଚାର ପ୍ରସାରରେ ଓଡ଼ିଶା ସୁନାମ ଆଣିଛି । ଯେଉଁଥିରେ ହକ୍‌ଦାର ସାଜିଛନ୍ତି ମିଶନ ଶକ୍ତି ମାଆମାନେ । ଓଡିଶାର ମିଲେଟ୍ ମିଶନ ସାରା ବିଶ୍ୱର ଦୃଷ୍ଟି ଆକର୍ଷଣ କରିବାରେ ସଫଳ ହୋଇଛି ଓ ଅନ୍ୟ ରାଜ୍ୟମାନଙ୍କ ପାଇଁ ଆଦର୍ଶ ପଦବାଚ୍ୟ ସାବ୍ୟସ୍ତ ହୋଇଛି । ମିଳିତ ଜାତିସଂଘ ମଧ୍ୟ ଏହି କାର୍ଯ୍ୟକ୍ରମର ଉଚ୍ଚ ପ୍ରଶଂସା କରିଛି ।

୧୩ଟି ପଡ଼ୋଶୀ ଦେଶର ଉତ୍ପାଦକୁ ଭାରତ ବାଣିଜ୍ୟ ମେଳା ପ୍ରଦର୍ଶନ ଅବସରରେ ଏକତ୍ର କରିବା 'ବସୁଧୈବ କୁଟୁମ୍ବକମ୍'ର ଆଦର୍ଶକୁ ଦର୍ଶାଉଛି । ଏହା ବିଶ୍ୱର ଏକ ଛୋଟ ଅଂଶ କିନ୍ତୁ ଏହା ସହଯୋଗ ଏବଂ ବାଣିଜ୍ୟର ନିବିଡ଼ତା ମାଧ୍ୟମରେ ଗୋଟିଏ ବିଶ୍ୱର ଭାବନା ବିକଶିତ କରିବାର ମହାନ୍ ବାର୍ତ୍ତା ବହନ କରେ । ଓଡ଼ିଶା ଏହି ପଦକ୍ଷେପର ଏକ ଗର୍ବିତ ଅଂଶୀଦାର ।

ବିଶ୍ୱ ଏକ ପରିବାର । ବ୍ୟକ୍ତିଗତ କିମ୍ବା ପାରିବାରିକ ସ୍ୱାର୍ଥ ଅପେକ୍ଷା ସାମୂହିକ କଲ୍ୟାଣକୁ ପ୍ରାଥମିକତା ଦେଇ ଏକ ବିଶ୍ୱସ୍ତରୀୟ ଦୃଷ୍ଟିକୋଣକୁ ପ୍ରୋତ୍ସାହିତ କରୁଥିବାରୁ ଏହି ବିଷୟବସ୍ତୁ ସମସ୍ତଙ୍କ ପାଇଁ ସର୍ବଦା ପ୍ରାସଙ୍ଗିକ ।

**ସମ୍ପାଦିକା**
(କସ୍ତୁରୀ ମହାପାତ୍ର)

❖ ❖ ❖

# କଳିଙ୍ଗ ନୌସଂସ୍କୃତି

**ପ୍ରଭାତ କୁମାର ନନ୍ଦ**

ସଂସ୍କୃତି ବହୁ ଭାବରେ ଇଂରାଜୀ ଶବ୍ଦ 'କଲ୍ଚର'ର ଅର୍ଥ ସହିତ ସମାନ ବୋଲି ବିବେଚନା କରାଯାଏ । ଇଂରାଜୀ 'କଲ୍ଚର' ଶବ୍ଦ ଲାଟିନ ଭାଷାର 'କଲ୍ଚରା'ରୁ ସୃଷ୍ଟି ହୋଇଛି । ତାହାର ମୂଳ ଅର୍ଥ ହେଉଛି, ବିକାଶ ଲାଭ କରିବା । ସଂସ୍କୃତ ଓ ଓଡ଼ିଆ ଭାଷାରେ ସଂସ୍କୃତିର ଅର୍ଥ ବହୁ ବ୍ୟାପକ । ଚିରସ୍ରୋତା ନଦୀ ଭଳି ଯେଉଁ ସମାଜରେ କଳା, ସାହିତ୍ୟ, ପରମ୍ପରା, ଭାସ୍କର୍ଯ୍ୟ, ମାନବିକ, ଆଧ୍ୟାତ୍ମିକତା ପ୍ରଭୃତି ଯୁଗ ପରେ ଯୁଗ ବିକଶିତ ହୋଇ ଆସିଛି, ସେହି ଜାତି ବା ସମାଜକୁ ସଂସ୍କୃତିପ୍ରବଣ ରୂପେ ଗ୍ରହଣ କରାଯାଇଛି । କଳିଙ୍ଗର ଇତିହାସକୁ ଆଲୋଚନା କଲେ, ତହିଁରେ ନୌବାଣିଜ୍ୟିକ ତଥ୍ୟ କେବଳ ପରିସଂଖ୍ୟାନରେ ସୀମିତ ନ ହୋଇ ସଂସ୍କୃତି ରୂପେ ଉଦ୍‌ଭାସିତ ହୋଇଛି ।

ପ୍ରାଚୀନ କଳିଙ୍ଗର ସାଧକ ତଥା ଅଭିଜ୍ଞ ନୌବାଣିଜ୍ୟ ପୋତ ନିର୍ମାଣକାରୀ କର୍ମକାରଗଣ ବହୁ କାଳରୁ ନିଜର ପ୍ରସିଦ୍ଧି ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ କରିଯାଇଅଛନ୍ତି । କଳିଙ୍ଗ ନୌସଂସ୍କୃତିକୁ ମୁଖ୍ୟତଃ ଚାରୋଟି ଭାବରେ ବିଭକ୍ତ କରାଯାଇପାରେ । ପ୍ରଥମତଃ ଆଦିମ କାଳରୁ ନୌଯାତ୍ରା, ଦ୍ୱିତୀୟତଃ ଉନ୍ନତମାନର ଜଳ ଯାନ ନିର୍ମାଣର କଳା କୁଶଳତା, ତୃତୀୟତଃ ପୃଥିବୀର ବିଭିନ୍ନ ଦେଶକୁ ସଫଳତାର ସହ ବାଣିଜ୍ୟ ନିମିତ୍ତ ବିଭିନ୍ନ ସାଗରରେ ନୌଯାତ୍ରା ଓ ଶେଷତଃ ବିଭିନ୍ନ ଦେଶରେ କଳିଙ୍ଗର ସଂସ୍କୃତି ବିଷୟରେ ପ୍ରଚାର କରି ବିଶ୍ୱ ଭ୍ରାତୃତ୍ୱ ଭାବର ବିକାଶ ସଫଳତା ଅର୍ଜନ ।

ବୌଦ୍ଧ ଜାତକ ଗଳ୍ପର ବର୍ଣ୍ଣନାକୁ ଅନୁଧ୍ୟାନ କଲେ ଖ୍ରୀଷ୍ଟପୂର୍ବ ପଞ୍ଚମ ଶତାବ୍ଦୀରେ କଳିଙ୍ଗର ବଣିକମାନେ ଦୂରଦେଶକୁ ଯାତ୍ରା କରି ବାଣିଜ୍ୟ କରୁଥିଲେ । ବୌଦ୍ଧଧର୍ମର କୁଳବଂଶ, କାଠବଂଶ, ମହାବଂଶ, ଦ୍ୱୀପ ବଂଶ, ସୂତକ, ପିଟକ, ନିକାୟ, ଆର୍ଯ୍ୟ ମଞ୍ଜୁଳଶ୍ରୀ ମୂଳକଳ୍ପ ପ୍ରଭୃତି ଗ୍ରନ୍ଥରେ କଳିଙ୍ଗବାସୀଙ୍କର ବାଣିଜ୍ୟ ବିଷୟରେ ବିବରଣୀ ଦିଆଯାଇଛି । ଖ୍ରୀଷ୍ଟପୂର୍ବ ୨୦୦ ବର୍ଷରେ ରଚିତ ଭରତ ମୁନୀଙ୍କ ନାଟ୍ୟଶାସ୍ତ୍ରରେ କଳିଙ୍ଗର ବର୍ଣ୍ଣନା ଓ ତାହାର ନୌବାଣିଜ୍ୟଜନିତ ଗୁରୁତ୍ୱ ବିଷୟରେ ଉଲ୍ଲେଖ କରିଛନ୍ତି । ମାଳବର ରାଜା ଭୋଜ 'ଯୁକ୍ତି କଳ୍ପତରୁ' ନାମରେ ଏକ ପୁସ୍ତକ ଦ୍ୱିତୀୟ ଶତାବ୍ଦୀରେ ରଚନା କରିଥିଲେ । ମାଳବ ତତ୍‌କାଳୀନ କଳିଙ୍ଗର ଏକ ଅଂଶ ଥିଲା । 'ଯୁକ୍ତି କଳ୍ପତରୁ' ସଂସ୍କୃତରେ ରଚିତ ଭାରତର ପ୍ରାଚୀନତମ ନୌଯାନ ନିର୍ମାଣ କୌଶଳ ସମ୍ବନ୍ଧିତ ପୁସ୍ତକ । କଳିଙ୍ଗର ନୌଯାନ କର୍ମକାରଗଣ ଏହି ପୁସ୍ତକରେ ପ୍ରଦତ୍ତ ଶୈଳୀ ଅନୁସାରେ ନୌଯାନ ନିର୍ମାଣ କରୁଥିଲେ । ନୌଯାନ ନିର୍ମାଣ ବ୍ୟତୀତ ବିଭିନ୍ନ ରତ୍ନ, ଖଣ୍ଡା, ଘୋଡ଼ା, ହାତୀ ଓ ଅଳଙ୍କାର ପ୍ରଭୃତିର ଚୟନ ବିଦ୍ୟା ପୁସ୍ତକରେ ରଚିତ ହୋଇଥିଲା ।

ନୌଯାନ ନିର୍ମାଣ ନିମିତ୍ତ ଉପଯୁକ୍ତ କାଷ୍ଠ ଚୟନ, ବିଭିନ୍ନ ପ୍ରକାର ନୌଯାନର ନିର୍ମାଣ ବିଧି ବିଶଦ୍‌ଭାବରେ 'ଯୁକ୍ତି କଳ୍ପତରୁ'ରେ ବର୍ଣ୍ଣିତ ହୋଇଛି । ସମୁଦ୍ରରେ ଯାତ୍ରା ନିମିତ୍ତ ଯାନକୁ ତାହାର ଆକାର ଅନୁସାରେ ଦୀର୍ଘା ଓ ଉନ୍ନତା ଭାବରେ ନାମିତ କରାଯାଇଛି । ନଦୀରେ ଯାତ୍ରା

କରୁଥିବା ନୌଯାନକୁ କ୍ଷୁଦ୍ରା, ମଧ୍ୟମା, ଭୀମା, ଚପଳା, ପତଳା, ଭାୟା, ଦୀର୍ଘା, ପାତ୍ରପୁଟା, ଗର୍ଭରା, ମନ୍ଥରା ପ୍ରଭୃତି ନାମରେ ଚିହ୍ନିତ କରାଯାଇଥିଲା । ପ୍ରତି ନୌଯାନରେ ବ୍ୟବହୃତ କାଷ୍ଠ, ଉଚ୍ଚତା, ଦୈର୍ଘ୍ୟ, ପ୍ରସ୍ଥ ଓ ନିର୍ମାଣ ଶୈଳୀ ଭିନ୍ନ । କଳିଙ୍ଗର ସାଧବମାନେ ନୌଯାନକୁ ବୋଇତ ନାମରେ ଗ୍ରହଣ କରିଥିଲେ ।

କଳିଙ୍ଗର ସାଧବମାନେ ବୋଇତ ନିର୍ମାଣ କ୍ଷେତ୍ରରେ 'ଯୁକ୍ତି କଳ୍ପତରୁ'ଙ୍କଠାରୁ ପାଦେ ଆଗେଇ ଯାଇଥିଲେ । ବିଭିନ୍ନ ବୋଇତକୁ ସେମାନେ ଆମର ବିଭିନ୍ନ ଦେବୀଙ୍କ ନାମରେ ଚିହ୍ନିତ କରୁଥିଲେ । ପୁନଶ୍ଚ ବୋଇତର ସମ୍ମୁଖ ଭାଗରେ ସିଂହ, ମହିଷ, ସର୍ପ, ହସ୍ତୀ, ବ୍ୟାଘ୍ର, ଭେକ, ମନୁଷ୍ୟ ପ୍ରଭୃତିର ଚିତ୍ର ଖୋଦିତ କରୁଥିଲେ । ରାଜକୀୟ ବ୍ୟକ୍ତିମାନଙ୍କୁ ବହନ କରି ନେଉଥିବା ବିରାଟକାୟ ପୋତଗୁଡ଼ିକ ତିନି ମହଲା ବିଶିଷ୍ଟ ଥିଲା । ସେହି ପ୍ରକୋଷ୍ଠର ନାମ ସର୍ବ ମନ୍ଦିରା, ମଧ୍ୟ ମନ୍ଦିରା ଓ ଅଗ୍ରମନ୍ଦିରା ଥିଲା । ସର୍ବ ମନ୍ଦିରାରେ ରାଜକୋଷ ଓ ଅଶ୍ୱ ପରିବହନ ସାମଗ୍ରୀ ଗଚ୍ଛିତ କରାଯାଉଥିଲା । ସେହି ପ୍ରକୋଷ୍ଠରେ ମହିଳାମାନଙ୍କ ପାଇଁ କୋଠରି ନିର୍ମିତ ହେଉଥିଲା । ମଧ୍ୟ ମନ୍ଦିରା ପ୍ରକୋଷ୍ଠ ପ୍ରଶସ୍ତ ଓ କାରୁକାର୍ଯ୍ୟ ବିମଣ୍ଡିତ ହେଉଥିଲା । ସେଠାରେ କେବଳ ରାଜା, ବରିଷ୍ଠ କର୍ମଚାରୀ ଓ ରାଜ ଅତିଥିମାନେ ବ୍ୟବହାର କରୁଥିଲେ । ଅଗ୍ରମନ୍ଦିରା ବା ତୃତୀୟ ମହଲା ସୁପ୍ରଶସ୍ତ ଥିଲା । ଯୁଦ୍ଧ ସରଞ୍ଜାମ ଓ ସୈନ୍ୟବାହିନୀ ତାହା ବ୍ୟବହାର କରୁଥିଲେ । ସେଭଳି ବୋଇତକୁ ବିଭିନ୍ନ ଆକର୍ଷଣୀୟ ରଙ୍ଗରେ ସୁଶୋଭିତ କରାଯାଉଥିଲା । ବୋଇତଗୁଡ଼ିକ ପାଲ ଦ୍ୱାରା ବାୟୁର ପ୍ରଭାବରେ ଚାଳିତ ହେଉଥିବାରୁ ପାଲର ଦିଗ ପରିବର୍ତ୍ତନ ନିମିତ୍ତ ବ୍ୟବସ୍ଥା ବୋଇତରେ ଥିଲା । ଉନ୍ନତମାନର ନୌଯାନ ନିର୍ମାଣ କରିଥିବା ଯୋଗୁଁ, କଳିଙ୍ଗର ସାଧବମାନେ ପୃଥିବୀର ବିଭିନ୍ନ ଦେଶକୁ ସୁରକ୍ଷାର ସହିତ ଯାତ୍ରା କରିବାକୁ ସୁଯୋଗ ଲାଭ କରିଥିଲେ । ସମଗ୍ର ଭାରତ ବର୍ଷରେ ନୌଯାନ କୁଶଳତାର ସହ ଗଠନ କରିବାରେ କଳିଙ୍ଗର ସାଧବମାନେ ଅଗ୍ରଣ୍ୟ ଥିଲେ ।

କଳିଙ୍ଗର ସାଧବମାନେ ପୃଥିବୀର ଯେତେ ଦେଶକୁ ଯାଇ ବାଣିଜ୍ୟ ବ୍ୟବସାୟ କରିଥିଲେ, ଭାରତର ଅନ୍ୟ କୌଣସି ପ୍ରାନ୍ତର ବଣିକମାନେ ସେତେ କରିପାରିନଥିଲେ । କଳିଙ୍ଗର ସାଧବମାନେ ଜାଭା, ସୁମାତ୍ରା, ବାଲି, ବୋର୍ଣ୍ଣିଓ, ସିଂହଳ, ଚୀନ, ଜାପାନ, ଭିଏତ୍‌ନାମ, ଲାଓସ, ମିଶର, ଆରବ, ସିରିଆ, ପାଲେଷ୍ଟାଇନ୍, ପେଟ୍ରୋବନ୍ଦର, ଗାନ୍ଧାର, ଗ୍ରୀସ, ରୋମ, ସିଡ୍‌ନୀ, ପେରୁ, ଆଲୋକଜାଣ୍ଡ୍ରିଆ, ମାଲଦ୍ୱିଭି, ମେସୋପଟାମିଆ ପ୍ରଭୃତି ପୃଥିବୀର ବିଭିନ୍ନ ଦେଶ ସହିତ ବାଣିଜ୍ୟ ବ୍ୟବସାୟ କରୁଥିଲେ । ବିଶେଷତଃ ଚାଉଳ, ଚିନି, ଆଖୁ, ଘିଅ, ନଡ଼ିଆ, ଲାଖ, ଲବଙ୍ଗ ତେଲ, ଆଚାର, ସୂକ୍ଷ୍ମ ରେଶମ ପାଟବସ୍ତ୍ର, ତୁଳା, ନାନାବିଳାସ ସାମଗ୍ରୀ ସହିତ ଜୀବନ୍ତ ହସ୍ତୀ ରପ୍ତାନି ଦ୍ରବ୍ୟ ରୂପେ ପରିଗଣିତ ହେଉଥିଲା । କଳିଙ୍ଗର ସାଧବମାନେ ବିଦେଶରୁ ମୁକ୍ତା, ରୂପାଖଣ୍ଡ, ବିଭିନ୍ନ ମସଲା, ଚନ୍ଦନ କାଠ, ସୁଗନ୍ଧିତ ତୈଳ, ଜୀବନ୍ତ ଜେବ୍ରା ପ୍ରଭୃତି ସଂଗ୍ରହ କରି କଳିଙ୍ଗର ବିଭିନ୍ନ ନଦୀତଟ ଓ ସମୁଦ୍ରତଟରେ ତାହାର ବିକ୍ରୟ କରୁଥିଲେ । କଳିଙ୍ଗ ସାଧବମାନେ ବ୍ୟବସାୟରେ ବିଚକ୍ଷଣ ଥିଲେ । ବିଦେଶରୁ ରୂପାଖଣ୍ଡମାନ ଆମଦାନୀ କରି, ତହିଁରେ ବିଭିନ୍ନ ତାରକସୀ କଳାକୃତି ପ୍ରସ୍ତୁତ କରି ବିଦେଶକୁ ରପ୍ତାନି କରୁଥିଲେ ।

କଳିଙ୍ଗ ସାଧବମାନେ ବିଭିନ୍ନ ରାଷ୍ଟ୍ରକୁ ନୌପଥ ଆବିଷ୍କାର କରିଥିଲେ । ବିଂଶ ଶତାବ୍ଦୀ ପୂର୍ବରୁ ବର୍ତ୍ତମାନର 'ବଙ୍ଗଳା ଉପସାଗର'ର ନାମ 'କଳିଙ୍ଗ ସାଗର' ଥିଲା । ଇଂରେଜମାନେ ଭାରତରେ ବାଣିଜ୍ୟ କେନ୍ଦ୍ର ରୂପେ ବାଲେଶ୍ୱରକୁ ବାଛିଥିଲେ । ମାତ୍ର ତତ୍‌କାଳୀନ ମରହଟ୍ଟା ଓ ମୋଗଲ କର୍ତ୍ତୃପକ୍ଷଙ୍କ ଅସହଯୋଗ ଯୋଗୁଁ, କଲିକତାକୁ ବଦଳାଇଥିଲେ । ଇଂରେଜମାନେ ବାଲେଶ୍ୱରକୁ ବାଣିଜ୍ୟ କେନ୍ଦ୍ର ରୂପେ ବ୍ୟବହାର କରିଥିଲେ, ଓଡ଼ିଶାର ବିଭିନ୍ନ କ୍ଷେତ୍ରରେ ଉନ୍ନତି ହୋଇଥାଆନ୍ତା କଳିଙ୍ଗସାଗରର ନାମ 'ବେ ଅଫ୍ ବେଙ୍ଗଲ' ହୋଇନଥାନ୍ତା, ସାଧବମାନେ ଖ୍ରୀଷ୍ଟପୂର୍ବ ସମୟରୁ ବିଭିନ୍ନ ଦ୍ୱୀପର ଆବିଷ୍କାର ନିମିତ୍ତ ପ୍ରୟାସ କରି ବହୁ ଅସୁବିଧାର ସମ୍ମୁଖୀନ ହୋଇଥିବେ ।

ସମୁଦ୍ରର ବକ୍ଷକୁ ନୌଯାତ୍ରା କଲାବେଳେ କେତେ ଦିନରେ ଯେ କୌଣସି ସ୍ଥଳର ସନ୍ଧାନ ମିଳିବ, ତାହା ଅନୁମାନ କରିବା ସମ୍ଭବ ନୁହେଁ । ବୋଇତରେ ସୀମିତ ପରିମାଣର ଖାଦ୍ୟ ଓ ପାନୀୟ ଜଳ ନେଇ ହେବ । ସେହି ପରିସ୍ଥିତିରେ ନିଜର ଜୀବନକୁ ବାଜି ଲଗାଇ ସାଧବମାନେ ସାହସିକତାର ସହ ନୌଯାତ୍ରା କରୁଥିଲେ । ସେଥିନିମିତ୍ତ 'କଳିଙ୍ଗାଃ ସାହିସକାଃ' ସମ୍ମାନରେ ସମଗ୍ର କଳିଙ୍ଗ ଜାତି ଭୂଷିତ ହୋଇଥିଲା । କଳିଙ୍ଗର ସାଧବମାନେ ଦିବସରେ ସୂର୍ଯ୍ୟଙ୍କର ଆକାଶରେ ସ୍ଥିତି ଓ ରାତ୍ରୀରେ ଧ୍ରୁବତାରାକୁ ଲକ୍ଷ୍ୟ କରି ନୌଯାତ୍ରା କରୁଥିଲେ । ପ୍ରଥମଥର ନୌଯାତ୍ରାରେ ଯାଇ ପ୍ରତ୍ୟାବର୍ତ୍ତନ ପରେ କାର୍ପାସ ପଟ୍ଟରେ ତାହାର ମାର୍ଗକୁ ଅଙ୍କନ କରି ଭବିଷ୍ୟତରେ ସେହି ସ୍ଥଳକୁ ବୋଇତରେ ଯାତ୍ରା କରୁଥିବା ସାଧବମାନଙ୍କୁ ପ୍ରଦାନ କରାଯାଉଥିଲା । ଏହିଭଳି ଭାବରେ ପୃଥିବୀର ବିଭିନ୍ନ ବନ୍ଦରର କାର୍ପାସ ନକ୍ସା ସାଧବମାନଙ୍କର ପ୍ରାପ୍ତ ହୋଇଥିଲା । କଳିଙ୍ଗ ନୌ ସଂସ୍କୃତିରେ ଏହାର ପ୍ରଭାବଶାଳୀ ଗୁରୁତ୍ୱ ରହିଛି ।

ବିଶ୍ୱ ପ୍ରସିଦ୍ଧ ନୌବିତ୍ ଟଲେମି ତାଙ୍କର ବିଶ୍ୱ ଭୂଗୋଳ ଗ୍ରନ୍ଥର ଷଷ୍ଠ ତାଲିକାରେ କଳିଙ୍ଗର ନଦୀ ଓ ସାଗର ଉପକୂଳରେ ଛଅଟି ପ୍ରସିଦ୍ଧ ବନ୍ଦର ଥିବା ବିଷୟରେ ସୂଚନା ଦେଇଛନ୍ତି । ସେଗୁଡ଼ିକ ହେଲା– କଟିକର୍ଦମ (କଟକ), ଆଫେଟେରିଆନ୍ (ଗୋପାଳପୁର), ତାମ୍ରଲିପ୍ତି (ତାମଲୁକ୍, ପୂର୍ବ ମେଦିନୀପୁର, ପଶ୍ଚିମବଙ୍ଗଳା), କୋଣାଗାର (କୋଣାର୍କ), ମନ୍ନଦ (ପାରାଦୀପ) ଓ ପାଲୁର (ଋଷିକୂଲ୍ୟା ନଦୀ ମୁହାଣ) । ଏହା ବ୍ୟତୀତ ନନିଗନ୍ (ପୁରୀ), ଚେଳିତାଳ (ତିର୍ତ୍ତୋଲ), କୋଶମ୍ବ (ବାଲେଶ୍ୱର), ମାଣିକପାଟଣା ପ୍ରଭୃତି ବନ୍ଦର କଳିଙ୍ଗରେ ଥିଲା । ସମସ୍ତ ବନ୍ଦର ସହ ସ୍ଥଳ ପଥରେ ସଡ଼କ ସଂଯୁକ୍ତ ହୋଇ ମୁଖ୍ୟ ବାଣିଜ୍ୟ ନଗରୀ, ରାଜଧାନୀ ସହ ରହିଥିଲା । କଳିଙ୍ଗର ବନ୍ଦରଗୁଡ଼ିକୁ ମୁଖ୍ୟତଃ ଦୁଇଭାଗରେ ବିଭକ୍ତ କରାଯାଇଥିଲା । ଯଥା– ପତ୍ତନ ଓ ଦ୍ରୋଣିମୁଖ । ସମୁଦ୍ରକୂଳରେ ଥିବା ବନ୍ଦରକୁ ପତ୍ତନ ଓ ବିଭିନ୍ନ ନଦୀର ମୁହାଣ ଓ ନିକଟବର୍ତ୍ତୀ ଅଞ୍ଚଳର ବନ୍ଦରଗୁଡ଼ିକୁ ଦ୍ରୋଣିମୁଖ ନାମରେ କୁହାଯାଉଥିଲା । କଳିଙ୍ଗର ନୌସଂସ୍କୃତି ଏତେ ବ୍ୟାପକ ଯେ ପ୍ରତି ତଥ୍ୟକୁ ନେଇ ବିରାଟ ଗ୍ରନ୍ଥ ରଚନା କରାଯାଇପାରିବ । ବାଣିଜ୍ୟିକ ପ୍ରସିଦ୍ଧି ବ୍ୟତୀତ ସାଂସ୍କୃତିକ, ଧର୍ମୀୟ, କଷିଭିତ୍ତିକ, ସାମାଜିକ ଓ ସାହିତ୍ୟିକ ଭାବର ଅପୂର୍ବ ଧାରା କଳିଙ୍ଗର ବନ୍ଦରଗୁଡ଼ିକ ସହିତ ଉଜ୍ଜୀବିତ ହୋଇ ରହିଆସିଥିଲା ।

କଳିଙ୍ଗର ନୌବାଣିଜ୍ୟିକ ପ୍ରସିଦ୍ଧି ତ୍ରୟୋଦଶ ଶତାବ୍ଦୀ ପର୍ଯ୍ୟନ୍ତ ଉଚ୍ଚମାନରେ ରହିଥିଲା । ଏ ବିଷୟରେ ଟଲେମି, ପ୍ଲିନି, ଫାଇଆନ୍, ହୁଏନ୍‌ସାଂ ପ୍ରଭୃତି ନୌବିତ୍ ଏବଂ ପରିବ୍ରାଜକମାନେ ବିଭିନ୍ନ ଗ୍ରନ୍ଥରେ ବର୍ଣ୍ଣନା କରିଛନ୍ତି । ଉପକୂଳରେ ଭୂଖନନ ଦ୍ୱାରା ବହୁ ପୁରାତନ ବିଦେଶୀ ପଦାର୍ଥ, ମୁଦ୍ରା, ତାମ୍ର ଫଳକ, ଭାସ୍କର୍ଯ୍ୟ ପ୍ରଭୃତି ସଂଗୃହୀତ ହୋଇଛି । ଚତୁର୍ଦ୍ଦଶ ଶତାବ୍ଦୀରେ ଆରବ ରାଷ୍ଟ୍ରର ନାବିକମାନଙ୍କର ନୌବାଣିଜ୍ୟରେ ପ୍ରାଧାନ୍ୟ ରହିଲା । ତଥାପି ପଞ୍ଚଦଶ ଶତାବ୍ଦୀ ତଥା ଗଜପତି କପିଳେନ୍ଦ୍ର ଦେବଙ୍କର ରାଜତ୍ୱ ସମୟରେ କଳିଙ୍ଗ ସାଧବମାନଙ୍କର ପ୍ରାଧାନ୍ୟ ଥିଲା । ପରେ ମୋଗଲ, ମରହଟ୍ଟା ଓ ଇଂରେଜ ଶାସନ ଅମଳରେ ସେହି ପ୍ରାଧାନ୍ୟ କ୍ରମଶଃ ପ୍ରଶମିତ ହୋଇ ଆସିଲା । ଇଂରେଜ ଶାସନ କାଳରେ ବାଲେଶ୍ୱର, ପିପିଲି, ଗଞ୍ଜାମ, ହରିଶପୁର, ଚାନ୍ଦବାଲି, ଧାମରା, ହୁକିଟୋଲା ପ୍ରଭୃତି ଅଞ୍ଚଳ ନୌବାଣିଜ୍ୟ କ୍ଷେତ୍ରରେ ଉପଯୋଗୀ ହୋଇଥିଲେ ।

କଳିଙ୍ଗର ସାଧବମାନେ ନିଜର ସୁରକ୍ଷା ନିମିତ୍ତ ନୌସେନା ବାହିନୀ ଗଠନ କରିଥିଲେ । ସେହି ଦୁର୍ଦ୍ଧର୍ଷ ବାହିନୀ କେବଳ ସାଧବମାନଙ୍କର ବୋଇତକୁ ସୁରକ୍ଷା ପ୍ରଦାନ ସହିତ କଳିଙ୍ଗ ରାଷ୍ଟ୍ରକୁ ରକ୍ଷା କରିବାରେ ସମର୍ଥ ହୋଇଥିଲେ । ଖାରବେଳଙ୍କ ପ୍ରସିଦ୍ଧ ହାତୀଗୁମ୍ଫା ଶିଳାଲିପି, ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀର ପ୍ରଥମ ଭାଗରେ ଖୋଦିତ ହୋଇଥିଲା । ସେହି ଶିଳାଲିପିରେ ତାମିଲ ରାଷ୍ଟ୍ର ସଂଘର ନୌସେନାକୁ ଧ୍ୱସ୍ତବିଧ୍ୱସ୍ତ କରିବା ନିମିତ୍ତ ସମ୍ରାଟ୍ ମହାମେଘ ବାହନ ଖାରବେଳଙ୍କୁ ନିଜ ନୌସେନାର

ପ୍ରୟୋଗ କରିବାକୁ ପଡ଼ିଥିଲା । ଐତିହାସିକ କେ.ଏ. ନୀଳକଣ୍ଠ ଶାସ୍ତ୍ରୀଙ୍କ ମତ ଅନୁଯାୟୀ, ''The famous Hatigumpha inscription of Kharavela (first half of the second century BC) mentions, A league of Tamil states that was 113 years old at the date of the inscription and had been for some time a source of danger to the Kalinga Kingdom''. ଜଗତସିଂହପୁର ଜିଲ୍ଲାର କୁଜଙ୍ଗ ଅଞ୍ଚଳର କ୍ଷେଣ୍ଟ ବଂଶର ରାଜାମାନଙ୍କର ଅଧୀନରେ ଦୁର୍ଦ୍ଧର୍ଷ ନୌସେନା ବାହିନୀ ଥିଲା । ସେମାନେ ମହାନଦୀ ମୁହାଣ ଦେଇ ଯାତାୟାତ କରୁଥିବା ଡଚ୍ ଓ ଇଂରେଜମାନଙ୍କର ଜାହାଜରୁ ଧନସମ୍ପଦ ଲୁଣ୍ଠନ କରୁଥିଲେ । କ୍ଷେଣ୍ଟ ରାଜାଙ୍କର ପାରାଦ୍ୱୀପ ନିକଟରେ ସମୁଦ୍ର କୂଳରେ ଉଚ୍ଚ ଅଟ୍ଟାଳିକା ଥିଲା ଓ ସେଠାରୁ ସାଗରରେ ଯାତାୟାତ କରୁଥିବା ଜାହାଜ ସମ୍ପର୍କରେ ଖବର ପାଉଥିଲେ । ନୌକାଚାଳନାରେ କୁଜଙ୍ଗ କୈବର୍ତ୍ତମାନେ ଧୂରୀଣ ଥିଲେ । ଇଂରେଜମାନେ କ୍ଷେଣ୍ଟ ରାଜାଙ୍କୁ ବନ୍ଦୀ କରିବା ପାଇଁ କଟକ ନେଇଥିବା ବେଳେ, କୈବର୍ତ୍ତମାନେ ନୌକାରେ ରାଜାଙ୍କୁ ନେଇ ମହାନଦୀରେ ଚାଲିଯାଇଥିଲେ ।

ଇତିହାସର ବିଭିନ୍ନ ସମୟରେ କଳିଙ୍ଗ ନୌବାଣିଜ୍ୟର ଉତ୍ଥାନ ପତନ ହୋଇଥିବା ବେଳେ, ସାଂସ୍କୃତିକ ପରମ୍ପରା ଅକ୍ଷୁର୍ଣ୍ଣ ରହିଥିଲା । କାର୍ତ୍ତିକ ପୂର୍ଣ୍ଣିମାରେ ସାଧବ ବଧୂମାନେ ଯେଭଳି ଭାବରେ ସାଧବମାନଙ୍କୁ ବନ୍ଦାପନା କରି ବୋଇତରେ ମେଲାଣି ଦେଉଥିଲେ, ବର୍ତ୍ତମାନ ସୁଦ୍ଧା ଓଡ଼ିଆ ନାରୀମାନେ କଦଳୀ ପଟୁଙ୍ଗା ବା ସୋଲରେ ଛୋଟ ନୌକା ତିଆରି କରି ତାହାକୁ ଜଳରେ ଭସାଇ ଦେଉଛନ୍ତି ଓ ବନ୍ଦାପନା କରୁଛନ୍ତି । ଏହାହିଁ କଳିଙ୍ଗ ନୌ ସଂସ୍କୃତିର ଧାରାବାହିକ ପ୍ରକାଶର ପ୍ରକୃଷ୍ଟ ଉଦାହରଣ! ପୃଥିବୀର ବହୁ ରାଷ୍ଟ୍ରର ବଣିକମାନେ ଅନ୍ୟଦେଶକୁ ଯାଇ ବାଣିଜ୍ୟ କରିବା ମାଧ୍ୟମରେ ସେ ଦେଶର ଶାସନକୁ ଅକ୍ତିଆର କରିଥିଲେ । ମାତ୍ର ସେ ସମସ୍ତ ଦେଶରୁ ଇଂରେଜ, ଡଚ୍, ଫରାସୀ ବଣିକମାନେ ଅପମାନିତ ହୋଇ ପଳାୟନ କରିଛନ୍ତି । ଭାରତରୁ ଇଂରେଜ, ପର୍ତ୍ତୁଗୀଜ୍ ଓ ଫରାସୀ ବଣିକ ରୂପୀ ଶାସକମାନଙ୍କୁ ଆନ୍ଦୋଳନ ମାଧ୍ୟମରେ ବିତାଡ଼ିତ କରାଯାଇଛି । ମାତ୍ର କଳିଙ୍ଗର ସାଧବମାନେ ବହୁ ରାଷ୍ଟ୍ରରେ ବାଣିଜ୍ୟ କରିବାକୁ ଯାଇଥିବା ବେଳେ ସେ ଦେଶର ଅଧିବାସୀଙ୍କର ସରଳତାର ସୁଯୋଗ ନେଇ ତାଙ୍କ ଉପରେ ଜୁଲମ କରିନଥିଲେ, ବରଂ ତାଙ୍କର ଶୁଭେଚ୍ଛୁ ହୋଇ କଳିଙ୍ଗର ଶ୍ରୀଜଗନ୍ନାଥ ସଂସ୍କୃତିର ନିର୍ଯ୍ୟାସ ବିଶ୍ୱଭ୍ରାତୃତ୍ୱର ପ୍ରଚାର କରିଥିଲେ । ସେଥିନିମିତ୍ତ କଳିଙ୍ଗର ଧର୍ମ ଓ ସଂସ୍କୃତିକୁ ଜାଭା, ସୁମାତ୍ରା, ବାଲିଦ୍ୱୀପ, ବର୍ମାରେ ଅଧିବାସୀମାନେ ଗ୍ରହଣ କରି, ବହୁ ମନ୍ଦିର ନିର୍ମାଣ କରିବା ସହିତ ପର୍ବପର୍ବାଣିକୁ ପାଳନ କରିଆସୁଛନ୍ତି । ବାଲି ଦ୍ୱୀପରେ ଓ ସିଂହଳରେ ଏବେ ମଧ୍ୟ ବୋଇତ ବନ୍ଦାଣ ଉତ୍ସବ ମହାସମାରୋହରେ ପାଳିତ ହୋଇ ଆସୁଛି । ଶଠତା ନୁହେଁ, ସୌହାର୍ଦ୍ଦତା ହିଁ କଳିଙ୍ଗ ସାଧବମାନଙ୍କର ସ୍ୱଭାବ ଥିଲା । ଉପରୋକ୍ତ ଦେଶଗୁଡ଼ିକରେ କଳିଙ୍ଗ ଅଧିବାସୀଙ୍କର ସ୍ୱତନ୍ତ୍ର ଜନବସତି ରହିଛି । ଏହାହିଁ କଳିଙ୍ଗ ନୌସଂସ୍କୃତିର ଅନ୍ୟତମ ସଜ୍ଜଳ ଉଦାହରଣ ।

ଭାରତ ସ୍ୱାଧୀନତା ଲାଭ କରିବା ପରେ କଳିଙ୍ଗର ଅନ୍ୟନାମ ଓଡ଼ିଶାର ଅଧିବାସୀମାନେ, ନୌବାଣିଜ୍ୟିକ ପରମ୍ପରାକୁ ରକ୍ଷା କରିବା ନିମିତ୍ତ ବନ୍ଦର ଶିଳ୍ପର ବିକାଶରେ ବ୍ରତୀ ହୋଇଛନ୍ତି । ୧୯୬୬ ମସିହାଠାରୁ ପାରାଦ୍ୱୀପ ବନ୍ଦର ବହୁ ବାଧାବିଘ୍ନ ସତ୍ତ୍ୱେ ଅଗ୍ରଗତି କରିଚାଲିଛି । ବର୍ତ୍ତମାନ ପାରାଦ୍ୱୀପ ବନ୍ଦର ଭାରତର ଶ୍ରେଷ୍ଠ ବନ୍ଦର ଭାବେ ପରିଗଣିତ ହୋଇ ଅନ୍ୟରାଜ୍ୟର ସମସ୍ତ ବୃହତ୍ ବନ୍ଦର ମଧ୍ୟରେ ସବୁଠାରୁ ଅଧିକ ପଣ୍ୟଦ୍ରବ୍ୟ କାରବାର କରିଛି । ପୁରୁଣା ଉକ୍ତି, 'କର୍ପୂର ଉଡ଼ିଯାଇଛି ଓ କେବଳ କନା ପଡ଼ିରହିଛି' ବର୍ତ୍ତମାନ ଭୁଲ ପ୍ରମାଣିତ ହୋଇଛି । ନୌବାଣିଜ୍ୟିକ କର୍ପୂର ଉଡ଼ିନାହିଁ ବରଂ ଅଧିକ ସୁବାସିତ ହୋଇ ବିଶ୍ୱ ନୌବାଣିଜ୍ୟରେ ଅଗ୍ରଣୀ ସ୍ଥାନ ଅଧିକାର କରିଛି । ପାରାଦ୍ୱୀପ ବ୍ୟତୀତ ଧାମରା ଓ ଗୋପାଳପୁର ବନ୍ଦରର ବିକାଶ ଦ୍ରୁତଗତିରେ ହୋଇଚାଲିଛି । ୨୦୦୩

ମସିହାରେ ରାଜ୍ୟ ସରକାରଙ୍କର ବନ୍ଦର ନୀତି (Port Policy) ପ୍ରଣୟନ ହେବା ପରେ ଓଡ଼ିଶାର ସମୁଦ୍ର ଓ ନଦୀଗୁଡ଼ିକର କୂଳରେ ସୋନେପୁର, ପାଲୁର, ବାଲିହରଚଣ୍ଡୀ, ଅସ୍ତରଙ୍ଗ, ଜଟାଧାରୀ ମୁହାଣ, ବରୁଣେଇ ମୁହାଣ, ଚୂଡ଼ାମଣି, ଇଂଚୁରୀ, ଚାନ୍ଦିପୁର, ବାହାବଳପୁର, ସୁବର୍ଣ୍ଣରେଖା ମୁହାଣରେ କୀର୍ତ୍ତନିଆ, ବିଚିତ୍ରପୁର ପ୍ରଭୃତି ବିଭିନ୍ନ ସ୍ଥାନରେ ବନ୍ଦର ନିର୍ମାଣ ନିମିତ୍ତ ପଦକ୍ଷେପ ନିଆଯାଇଛି । ପାରାଦ୍ୱୀପ ବନ୍ଦରରେ ଅଧିକ ବୃହତ୍‌କାୟ ଜାହାଜକୁ ପ୍ରବେଶ କରାଇ ଅଧିକ ପଣ୍ୟଦ୍ରବ୍ୟ କାରବାର କରିବା ନିମିତ୍ତ ସୁଯୋଗ ଦେବାପାଇଁ, କ୍ଷୁଦ୍ର ଜାହାଜଗୁଡ଼ିକର ପଣ୍ୟଦ୍ରବ୍ୟ କାରବାର ନିମିତ୍ତ ମହାନଦୀ ମୁହାଣରେ ନୂତନ ବନ୍ଦର ନିର୍ମାଣ ପାଇଁ ପଦକ୍ଷେପ ନିଆସାରିଲାଣି । ଏ ସମସ୍ତ ବିକାଶ କଳ୍ପେ ଯୋଜନା କାର୍ଯ୍ୟକାରୀ ହେବା ପରେ ଓଡ଼ିଶା ଏକ ବନ୍ଦରମାଳିନୀ ରାଜ୍ୟ ହେବ ଓ କଳିଙ୍ଗର ନୌସଂସ୍କୃତିକୁ ଅଧିକ ଋଦ୍ଧିମନ୍ତ କରିବ ।

ପ୍ରସିଦ୍ଧ କବି କାଳିଦାସ (ପଞ୍ଚମ ଶତାବ୍ଦୀ) ନିଜ ରଚିତ କାବ୍ୟ 'ରଘୁବଂଶ'ରେ କଳିଙ୍ଗର ନୌ ସେନା ଓ ନୌ ବାଣିଜ୍ୟକୁ ପ୍ରଶଂସା କରି କଳିଙ୍ଗର ରଜାଙ୍କୁ 'ମହୋଦଧିପତି' ରୂପେ ଗ୍ରହଣ କରିଥିଲେ । ଏକବିଂଶ ଶତାବ୍ଦୀରେ ନବକଳିଙ୍ଗ ବା ଓଡ଼ିଶା ପାରାଦୀପ ବନ୍ଦର ମାଧ୍ୟମରେ ସମଗ୍ର ଭାରତବର୍ଷରେ ସର୍ବାଧିକ ପରିମାଣର ପଣ୍ୟଦ୍ରବ୍ୟ କାରବାର କରି ପୁନଶ୍ଚ ନୌବାଣିଜ୍ୟିକ ଅଧିପତି ସମ୍ମାନକୁ ବଜାୟ ରଖିପାରିଛି । ବହୁ ପ୍ରାକୃତିକ ବିପର୍ଯ୍ୟୟ, ବିଭିନ୍ନ ଶକ୍ତି ଦ୍ୱାରା ପ୍ରତିରୋଧ ଓ ତୀବ୍ର ପ୍ରତିଯୋଗିତାର ବଳୟ ମଧ୍ୟଦେଇ କଳିଙ୍ଗର ନୌ ସଂସ୍କୃତି ଖ୍ରୀଷ୍ଟପୂର୍ବ ସମୟରୁ ଗତିକର ଆସିଛି ଓ ସ୍ୱୀୟ ସୌକୁମାର୍ଯ୍ୟକୁ ରକ୍ଷା କରିବାରେ ସମର୍ଥ ହୋଇଛି ।

ପ୍ରାକ୍ତନ ସଚିବ, ପାରାଦ୍ୱୀପ ବନ୍ଦର
ବିପୁଲ ଗାର୍ଡ଼ନ୍, ଟାୱାର-୪
ଘର-୯୦୩, ଘାଟିକିଆ, କଳିଙ୍ଗନଗର
ଭୁବନେଶ୍ୱର-୭୫୧୦୦୩

❖ ❖ ❖

# ଓଡ଼ିଶା ଇତିହାସରେ ପାରାଦ୍ୱୀପ ବନ୍ଦର ଓ ବିଜୁବାବୁ

**ବସନ୍ତ କୁମାର ନାୟକ**

ସ୍ୱାଧୀନତାର ପରବର୍ତ୍ତୀ ସମୟରେ ଓଡିଶାର ଗର୍ବ ବୋଲି କୁହାଯାଉଥିବା ଚାରୋଟି ଆଧୁନିକ କୀର୍ତ୍ତି ମଧ୍ୟରୁ ପାରାଦ୍ୱୀପ ବନ୍ଦର ଅନ୍ୟତମ । ୧୯୫୭ ମସିହାରେ ନିର୍ମିତ ହୀରାକୁଦ ବନ୍ଧ ପୃଥିବୀର ଅନ୍ୟତମ ଦୀର୍ଘକାୟ ବନ୍ଧ ହୋଇଥିବା ବେଳେ ୧୯୬୧ ମସିହାରେ ନିର୍ମିତ ରାଉରକେଲା ଇସ୍ପାତ କାରଖାନା ଓ ୧୯୮୪ ମସିହାର ନ୍ୟାସନାଲ ଆଲୁମିନିୟମ କମ୍ପାନି ଆରମ୍ଭରୁ ଥିଲା କେନ୍ଦ୍ରୀୟ ପ୍ରକଳ୍ପ । ତେଣୁ ଏଥିପାଇଁ ସବୁ ଅର୍ଥ କେନ୍ଦ୍ର ସରକାର ଯୋଗାଇ ଦେଇଥିଲେ । ମାତ୍ର ପାରାଦ୍ୱୀପ ବନ୍ଦର ଆରମ୍ଭ ହୋଇଥିଲା ସମ୍ପୂର୍ଣ୍ଣ ଭାବେ ଓଡିଶା ସରକାରଙ୍କ ଅର୍ଥରେ । ପାରାଦ୍ୱୀପକୁ ବୃହତ୍ ବନ୍ଦର କରିବା ପାଇଁ ବିଜୁବାବୁ ବସ୍ତୁତଃ ଏକ ଦୁଃସାହସିକ ପଦକ୍ଷେପ ନେଇଥିଲେ ।



୧୯୬୨ ମସିହା ଜାନୁୟାରୀ ୩ ତାରିଖରେ ପାରାଦ୍ୱୀପଠାରେ ବନ୍ଦର ପ୍ରତିଷ୍ଠା ହେଲା । ଦେଶର ବଡ ବନ୍ଦରଗୁଡିକ ସହର ନିକଟବର୍ତ୍ତୀ ସ୍ଥାନରେ ଗଢି ଉଠିଥିବା ବେଳେ ପାରାଦ୍ୱୀପ ବନ୍ଦର ନିର୍ମାଣ ଥିଲା ସ୍ୱତନ୍ତ୍ର । ବନ୍ଦର ପ୍ରତିଷ୍ଠା ବେଳକୁ ପାରାଦ୍ୱୀପ ଅଞ୍ଚଳ ଘଞ୍ଚ ଜଙ୍ଗଲ ପରିପୂର୍ଣ୍ଣ ଜୁଆରିଆ ନଦୀ ପରିବେଷ୍ଟିତ ଦ୍ୱୀପ ବା ଟାପୁ ସଦୃଶ ଥିଲା । ଘରଦ୍ୱାର ରାସ୍ତାଘାଟ ବର୍ଜିତ ଏହି ଦ୍ୱୀପକୁ ଭାରତର ପ୍ରଧାନମନ୍ତ୍ରି ପଣ୍ଡିତ ଜବାହରଲାଲ ନେହେରୁ ପୌଷ ମାସର ଶୀତ ରାତିରେ ଜଳପଥରେ ଆସି ବନ୍ଦରର ଶିଳାନ୍ୟାସ କରିଥିଲେ । ବିଜୁବାବୁଙ୍କ ଦକ୍ଷ ଓ ସଫଳ ନେତୃତ୍ୱ ଆଉ ପ୍ରକୃଷ୍ଟ, ସମୟୋଚିତ କାର୍ଯ୍ୟାନୁଷ୍ଠାନ ଯୋଗୁଁ ହେନ୍ତାଳ ଜଙ୍ଗଲ ମଧ୍ୟରୁ ଅପ୍ରତ୍ୟାଶିତ ଭାବେ ପାରାଦ୍ୱୀପ ଆତ୍ମପ୍ରକାଶ କରି ଇତିହାସର ଏକ ନୂଆ ଅଧ୍ୟାୟ ସୃଷ୍ଟି କଲା । ସଂପ୍ରତି ଏହା ଓଡିଶା ସମେତ ଆନ୍ଧ୍ର, ଛତିଶଗଡ, ଝାଡଖଣ୍ଡ, ମଧ୍ୟପ୍ରଦେଶ, ବିହାର, ପଶ୍ଚିମବଙ୍ଗ, ଉତ୍ତରପ୍ରଦେଶ ତଥା ଦେଶର ପୂର୍ବାଞ୍ଚଳ ବ୍ୟାପାର ବାଣିଜ୍ୟ ଓ ପଣ୍ୟ ବିନିମୟର ମୁଖ୍ୟଦ୍ୱାର ଭାବେ ପ୍ରତିଷ୍ଠିତ ହୋଇପାରିଛି ।

ଉତ୍କୃଷ୍ଟ ଜ୍ଞାନ କୌଶଳ, ଦକ୍ଷ ଶାସନ ବ୍ୟବସ୍ଥା, ଉତ୍ତମ ପରିଚାଳନା ସର୍ବୋପରି ଶ୍ରମିକ କର୍ମଚାରୀମାନଙ୍କ ନିଷ୍ଠା ଓ ନିରନ୍ତର ଉଦ୍ୟମ ଯୋଗୁଁ ପାରାଦ୍ୱୀପ ସଫଳତା ପରେ ସଫଳତାର ପାହାଚ ଅତିକ୍ରମ କରିବାକୁ ସକ୍ଷମ ହୋଇଛି । ତାହା ପଣ୍ୟ କାରବାର ହେଉ ଅଥବା ଜାହାଜ ପରିଚାଳନା, ସବୁଥିରେ ନୂଆ ନୂଆ ରେକର୍ଡ ସୃଷ୍ଟି କରିଚାଲିଛି । ୧୯୬୬–୬୭ ବର୍ଷରେ ମାତ୍ର ୬୭୦୮୦ ମେଟ୍ରିକ୍ ଟନ୍ ପଣ୍ୟ କାରବାର କରି ବ୍ୟବସାୟ ଆରମ୍ଭ କରିଥିବା ପାରାଦ୍ୱୀପ ୨୦୧୭–୧୮ ବର୍ଷରେ ୧୦୦ ନିୟୁତ ମେଟ୍ରିକ୍ ଟନ୍‌ରୁ ଉର୍ଦ୍ଧ୍ୱ ପଣ୍ୟ କାରବାର କରି ନିଜ ସ୍ଥିତିକୁ ସୁଦୃଢ କରିପାରିଛି । ଗତ ୫ ବର୍ଷର ପଣ୍ୟ

କାରବାରକୁ ଦେଖିବାକୁ ଗଲେ ୨୦୧୮–୧୯ ଆର୍ଥିକ ବର୍ଷରେ ୧୦୯.୨୭ ନିୟୁତ ମେଟ୍ରିକ୍ ଟନ୍ ୨୦୧୯–୨୦ରେ ୧୧୨.୬୯, ୨୦୨୦–୨୧ରେ (କରୋନା କଟକଣା ସତ୍ତ୍ୱେ) ୧୧୪.୫୫, ୨୦୨୧–୨୨ରେ ୧୧୬.୧୩ ଏବଂ ୨୦୨୨–୨୩ ବର୍ଷରେ ୧୩୫.୩୬ ନିୟୁତ ମେଟ୍ରିକ୍ ଟନ୍ ପଣ୍ୟ ପରିବହନ କରିଛି । ଏଥିରୁ ଜଣାଯାଏ ପାରାଦ୍ୱୀପ ପଣ୍ୟ କାରବାର କ୍ଷେତ୍ରରେ ବଡ ବଡ ବନ୍ଦରକୁ ପଛରେ ପକାଇ କ୍ରମାଗତ ଭାବେ ଦେଶର ଦ୍ୱିତୀୟ ବୃହତ୍ତମ ବନ୍ଦର ମାନ୍ୟତା ହାସଲ କରିଛି । ଉପଲବ୍ଧ ସୂଚନା ଅନୁସାରେ ପାରାଦ୍ୱୀପର ଆୟ ବାର୍ଷିକ ହାରାହାରି ୧୦ ପ୍ରତିଶତ ହାରରେ ବୃଦ୍ଧି ପାଉଛି । ଏହି ହିସାବରେ ବନ୍ଦରର ଆୟ ୨୦୧୬ ମସିହାରେ ୧୦୨୩.୯୦ କୋଟି ହୋଇଥିବା ବେଳେ ୨୦୨୨ ସୁଦ୍ଧା ୧୭୩୨.୨୩ କୋଟି ଟଙ୍କାରେ ପହଞ୍ଚିଥିଲା ଅର୍ଥାତ୍ ଗଲା ସାତ ବର୍ଷରେ ବନ୍ଦରର ଆୟ ମୋଟ ପ୍ରାୟ ୭୦ ପ୍ରତିଶତ ବଢିଛି । ଯହିଁରେ ବନ୍ଦରର ବାର୍ଷିକ ନିଟଲାଭ ଆୟର ପ୍ରାୟ ୧୮.୨୦ ପ୍ରତିଶତ । କେବଳ ସେତିକି ନୁହେଁ, ଚଳିତ ବର୍ଷ ତିନୋଟି ବର୍ଗରେ ଯଥା (୧) ବୃହତ୍ ବନ୍ଦର ମଧ୍ୟରେ ସାମଗ୍ରିକ ପ୍ରଦର୍ଶନରେ ଏକ ନମ୍ବର ମାନ୍ୟତା (୨) ବର୍ଥ ଡେ–ଆଉଟପୁଟରେ ଉଲ୍ଲେଖନୀୟ ପ୍ରଦର୍ଶନ ଏବଂ (୩) ୨୦୨୨–୨୩ ବର୍ଷରେ ରେକର୍ଡ ସଂଖ୍ୟକ ପଣ୍ୟ କାରବାର କରି ସାମଗ୍ରିକ ଭାବେ ପାରାଦ୍ୱୀପ ଦେଶର ସର୍ବଶ୍ରେଷ୍ଠ ପୁରସ୍କାର 'ସାଗର ଶ୍ରେଷ୍ଠ' ସମ୍ମାନ ହାସଲ କରି ପ୍ରାଚୀନ କଳିଙ୍ଗର ଅସ୍ତମିତ ନୌବାଣିଜ୍ୟିକ ପରମ୍ପରାର ସମୁଜ୍ଜ୍ୱଳ ଜ୍ୟୋତି ଭାବେ ଉଭା ହୋଇଛି ।

ବିଡମ୍ବନାର ବିଷୟ ଏହି ଯେ ଦେଶରେ ଶ୍ରେଷ୍ଠ ବନ୍ଦର ଭାବେ ସୁନାମ ଅର୍ଜନ କରିଥିବା ପାରାଦ୍ୱୀପ ବନ୍ଦରର ସୃଷ୍ଟି, ପରିକଳ୍ପନା ଆଉ ଏହାକୁ କାର୍ଯ୍ୟକାରୀ କରିବାରେ ଯେଉଁମାନଙ୍କର ମହନୀୟ ତ୍ୟାଗ, ନିଷ୍ଠା, ଉଦ୍ୟମ, ନିରବଚ୍ଛିନ୍ନ ପ୍ରଚେଷ୍ଟା ଆଉ ଅଦମ୍ୟ ସାହସ ଯୋଡି ହୋଇ ରହିଛି ସେଗୁଡିକର ସତ୍ୟତା କ୍ରମେ ବିଲୁପ୍ତ ହେବାକୁ ବସିଲାଣି । ଏହି ପରିପ୍ରେକ୍ଷୀରେ ଷାଠିଏ ବର୍ଷର ପାରାଦ୍ୱୀପକୁ ଫେରି ଚାହିଁଲା ବେଳେ ଅନ୍ୟମାନଙ୍କ ମଧ୍ୟରୁ ବିଜୁ ପଟ୍ଟନାୟକଙ୍କ ନାମ ସବୁଠାରୁ ଉଜ୍ଜ୍ୱଳ ଦିଶେ । ଅବଶ୍ୟ ସ୍ୱାଧୀନତାର ପ୍ରାକ୍ କାଳରେ ଦ୍ୱିତୀୟ ପ୍ରାଦେଶିକ ବିଧାନସଭାକୁ ଏଠାରୁ (କଟକ ପୂର୍ବ ସଦର ନିର୍ବାଚନ ମଣ୍ଡଳୀ) ନିର୍ବାଚିତ ପ୍ରତିନିଧି ଶ୍ରୀ ସାରଙ୍ଗଧର ଦାସ ପାରାଦ୍ୱୀପଠାରେ ଏକ ବନ୍ଦର ନିର୍ମାଣର ସୂଚନା ଦେଇଥିଲେ କିନ୍ତୁ ତାହାକୁ କାର୍ଯ୍ୟକାରୀ କରିବାର ମାନସିକତା ରାଜ୍ୟ ସରକାରଙ୍କର ନଥିଲା । କୁଜଙ୍ଗ ଅଞ୍ଚଳର ଲୋକପ୍ରିୟ ନେତା ଶ୍ରୀ ନାରାୟଣ ବୀରବର ସାମନ୍ତଦ ଏଠାକାର ଅନୁକୂଳ ପରିବେଶ, ଆବଶ୍ୟକ ଭିତ୍ତିଭୂମି ତଥା ଆଭ୍ୟନ୍ତରୀଣ ଅଞ୍ଚଳରେ ମହଜୁଦ ପ୍ରଚୁର ଖଣିଜ ସମ୍ପଦ ବାବଦରେ ସମ୍ବାଦପତ୍ର ମାଧ୍ୟମରେ ବାରମ୍ବାର ସରକାରଙ୍କ ଦୃଷ୍ଟି ଆକର୍ଷଣ କଲେ । ଡ. ହରେକୃଷ୍ଣ ମହତାବ ମହାନଦୀ ମୁହାଣ ନିକଟ ବୋଇତରାକୁଦ (ବୋଇତ ରୁହା କୁଦ) ଠାରେ ବନ୍ଦର ନିର୍ମାଣ କରାଯିବାକୁ ଓଡିଶାର ଦାବି ଜଣାଇଲେ । ଇତିମଧ୍ୟରେ ଦେଶ ସ୍ୱାଧୀନ ହେଲା । ଦେଶ ବିଭାଜନ ଫଳରେ ପୂର୍ବ ଉପକୂଳରେ ଥିବା ଚିଟାଗଙ୍ଗ ବନ୍ଦରକୁ ହରାଇବାକୁ ପଡିଲା । ଏହାର ବିକଳ୍ପ ଭାବେ କଲିକତା ଓ ବିଶାଖାପାଟଣା ମଧ୍ୟବର୍ତ୍ତୀ ସ୍ଥାନରେ ଏକ ଉନ୍ନତ ଆଧୁନିକ ବନ୍ଦର ପ୍ରତିଷ୍ଠା ସମ୍ଭାବନା ସମ୍ପର୍କରେ ଅନୁଧ୍ୟାନ କରାଗଲା । ୧୯୪୮ ମସିହାରେ ସ୍ଥାନ ଚିହ୍ନଟ ପାଇଁ କେନ୍ଦ୍ର ସରକାର ବନ୍ଦର ବୈଷୟିକ କମିଟି (Port Technical Committee) ଗଠନ କଲେ । ଏହି କମିଟିର ସୂଚନା ଆଧାରରେ କେନ୍ଦ୍ରୀୟ ଜଳ, ଶକ୍ତି, ସେଚ ଓ ନୌଚାଳନା କମିଶନ ମହାନଦୀ ମୁହାଣରେ ବନ୍ଦର ନିର୍ମାଣ କରିବାକୁ ସୁପାରିସ୍ କଲେ କିନ୍ତୁ ହଠାତ୍ କିଛି ହୋଇପାରିନଥିଲା । ଡ. ହରେକୃଷ୍ଣ ମହତାବ କେନ୍ଦ୍ରରେ ମନ୍ତ୍ରି ହେବା ପାଇଁ ଦିଲ୍ଲୀ ଗଲେ । ତା' ପରେ ଶ୍ରୀ ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ହେଲେ (୧୨.୦୫.୧୯୫୦) । ୧୯୫୧ ମସିହାରେ ମୁଖ୍ୟମନ୍ତ୍ରିଙ୍କ ଅନୁରୋଧକ୍ରମେ କେନ୍ଦ୍ର ସରକାର ଫ୍ରାନ୍ସର ନୌଯନ୍ତ୍ରୀମାନଙ୍କୁ ନେଇ ଏକ କମିଟି (Freach Mission of Consulting Engineers Committee) ଗଠନ କଲେ । କମିଟି ଓଡିଶା ଉପକୂଳରେ ବିଭିନ୍ନ ସ୍ଥାନ ଅନୁସନ୍ଧାନ କରି ମହାନଦୀ ମୁହାଣରେ ଗଭୀର

ସାମୁଦ୍ରିକ ବନ୍ଦର ଅପେକ୍ଷାକୃତ କମ୍ ବ୍ୟୟ ଅଟକଳରେ ନିର୍ମାଣ କରିବା ଅଧିକ ଉପଯୋଗୀ ହୋଇପାରିବ ବୋଲି ମତ ଦେଲେ । ୧୯୫୨ ମସିହାରେ ଭାରତର ନୌବାହିନୀ ପକ୍ଷରୁ ମହାନଦୀର ପ୍ରବେଶ ପଥ ସହିତ ପାରାଦ୍ୱୀପ ଉପକୂଳର ଗଭୀରତା ସର୍ବେକ୍ଷଣ କରାଗଲା । ସମୁଦ୍ର କୂଳଠାରୁ ୨୦ କି.ମିରୁ ଊର୍ଦ୍ଧ୍ୱ ଜଳରାଶି ସୁଗଭୀର ହୋଇଥିବାରୁ ସେଠାରେ ବନ୍ଦର ହେବାରେ କୌଣସି ଅସୁବିଧା ନଥିବା ବିଶେଷଜ୍ଞମାନେ ଜଣାଇଲେ । ୧୯୫୪ ମସିହା ଏପ୍ରିଲ ମାସରେ ପୁନେଠାରେ ଅନୁଷ୍ଠିତ ନ୍ୟାସନାଲ ହାରବର ବୋର୍ଡ ମିଟିଙ୍ଗରେ ପ୍ରସ୍ତାବିତ ପାରାଦ୍ୱୀପ ବନ୍ଦର ପାଇଁ ତତ୍କାଳୀନ ଜାହାଜ ଚଳାଚଳ ମନ୍ତ୍ରି ଶ୍ରୀଲାଲବାହାଦୁର ଶାସ୍ତ୍ରୀ ଅର୍ଥ ମଞ୍ଜୁର ଘୋଷଣା କଲେ । କେନ୍ଦ୍ରୀୟ ଜଳ ଓ ଶକ୍ତି ଅନୁସନ୍ଧାନ ସଂସ୍ଥା ପୁନେଠାରେ ନୌପରୀକ୍ଷାଗାରରେ ବନ୍ଦରର ପ୍ରତିରୂପ ଗଠନ କରି କୃତ୍ରିମ ଉପାୟରେ ମହାନଦୀ ମୁହାଣ ନିକଟରେ ଉପକୂଳିଆ ବନ୍ଦର (Costal Type Harbour) ନିର୍ମାଣ ବିଚାର କରାଯିବା ଆବଶ୍ୟକ ବୋଲି ମତ ଦେଇଥିଲେ । ଭାରତ ସରକାରଙ୍କ ବନ୍ଦର ବିଭାଗ ସ୍ୱତନ୍ତ୍ର ଅଧିକାରୀ ଶ୍ରୀ ଆଇ.ଜି. ଚାକୋ ୧୯୫୬ ମସିହା ମେ ମାସରେ ପାରାଦ୍ୱୀପ ପରିଦର୍ଶନ କରି ଏଠାରେ ବନ୍ଦର ନିର୍ମାଣ କାର୍ଯ୍ୟ ଆରମ୍ଭ କରାଯିବାକୁ ଭାରତ ସରକାରଙ୍କୁ ତାଙ୍କର ବିବରଣୀ ପ୍ରଦାନ କରିଥିଲେ ।

ଏହି ସମୟରେ ଓଡିଶା ଶାସନରେ ପରିବର୍ତ୍ତନ ଘଟିଲା ୧୯୫୬ ମସିହା ଅକ୍ଟୋବର ୧୯ ତାରିଖ ଦିନ ନବବାବୁ ଇସ୍ତଫା ଦେଲେ ଏବଂ ସେହିଦିନ ବମ୍ବେ ରାଜ୍ୟପାଳ ପଦରୁ ଇସ୍ତଫା ଦେଇ ଡ. ହରେକୃଷ୍ଣ ମହତାବ ଦ୍ୱିତୀୟ ଥର ପାଇଁ ମୁଖ୍ୟମନ୍ତ୍ରି ହେଲେ । ଡ. ମହତାବ ପାରାଦ୍ୱୀପ ବନ୍ଦର ଯୋଜନାକୁ ସଫଳ ଭାବରେ କାର୍ଯ୍ୟକାରୀ କରିବା ପାଇଁ ପଦକ୍ଷେପ ନେଲେ । ତାଙ୍କରି ଅନୁରୋଧ କ୍ରମେ ଭାରତ ସରକାର ମଧ୍ୟମାନର ବନ୍ଦର ବିକାଶ କମିଟି (Intermediate Ports Development Committee) ଗଠନକରି ପାରାଦ୍ୱୀପଠାରେ ବନ୍ଦର ନିର୍ମାଣ ସମ୍ପର୍କରେ ଅଧିକ ଗବେଷଣା କରାଯିବାକୁ ନିର୍ଦ୍ଦେଶ ଦେଲେ । ଏହି କମିଟିର ପ୍ରସ୍ତାବ ଅନୁଯାୟୀ ୧୯୫୮ ମସିହା ଜାନୁୟାରୀ ମାସରେ ପାରାଦ୍ୱୀପକୁ ଜାତୀୟ ସ୍ତରରେ ଏକ କ୍ଷୁଦ୍ର ବନ୍ଦରର ମର୍ଯ୍ୟାଦା ମିଳିଲା ।

ମହାନଦୀ ମୁହାଣ ହେଟାମୁଣ୍ଡିଆ ବା ବୋଇତରାକୁଦଠାରେ ବନ୍ଦର ପ୍ରତିଷ୍ଠା ଉତ୍ସବ ପାଳନକରି ଡ. ହରେକୃଷ୍ଣ ମହତାବ ପାରାଦ୍ୱୀପ ବନ୍ଦରକୁ ସରକାରୀ ଭାବେ ଘୋଷଣା କରିଦେଲେ । ମଧ୍ୟବର୍ତ୍ତୀକାଳୀନ ବ୍ୟବସ୍ଥା ସ୍ୱରୂପ ତାଳଦଣ୍ଡା କେନାଲକୁ ଗଭୀର କରିବା, ଲକ୍‌ଗୁଡିକର ଶକ୍ତି ଦ୍ୱିଗୁଣିତ କରିବା ସହ ଦୈତାରି, ଟମକା ଖଣି ଅଞ୍ଚଳରୁ ଲୁହାପଥର କଟକ–ଚୌଦ୍ୱାର ଚଷାପଡା ପର୍ଯ୍ୟନ୍ତ ଅଣାଯାଇ ସେଠାରୁ ବଡ ବଡ ଡଙ୍ଗାରେ ବୋଝେଇ ହୋଇ ଚଉମୁହାଣି ପର୍ଯ୍ୟନ୍ତ ଅଣାଗଲା । ସେଠାରେ ପୁନର୍ବାର ମାଲବାହୀ ଭେଳା (Barge) ଗୁଡିକରେ ବୋଝାଇ କରାଯାଇ ଯାନ୍ତ୍ରିକ ପୋତ (Power Boat) ସାହାଯ୍ୟରେ ଟାଣି ନେଇ ମୁହାଣଠାରୁ ୮ କି.ମି. ଗଭୀର ସମୁଦ୍ରରେ ଅପେକ୍ଷା କରିଥିବା ଜାହାଜରେ ବୋଝାଇ କରାଯାଉଥିଲା । ଏହି ପ୍ରଣାଳୀରେ ୧୯୫୮–୫୯ ବର୍ଷରେ ମୋଟ ୨୪ ହଜାର ମେଟ୍ରିକ୍ ଟନ୍ ଲୁହାପଥର ଜାପାନକୁ ରପ୍ତାନି କରାଯାଇଥିଲା । ଏହି ବ୍ୟବସ୍ଥା ଏକ ବ୍ୟୟ ବହୁଳ ଓ ସମୟ ସାପେକ୍ଷ ହୋଇଥିବାରୁ କିଛିଦିନ ପରେ ବନ୍ଦ ହୋଇଯାଇଥିଲା ।

ଓଡିଶାର ତୃତୀୟ ବିଧାନସଭା ନିମନ୍ତେ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ଅନୁଷ୍ଠିତ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନରେ କଂଗ୍ରେସର ଆଶାତୀତ ବିଜୟ ସାରା ଦେଶରେ ଚମକ ସୃଷ୍ଟି କରିଥିଲା । ସେତେବେଳେ ୧୪୦ ଟି ଆସନ ମଧ୍ୟରୁ କଂଗ୍ରେସ ୮୨ଟି ଆସନ ଦଖଲ କରି ବିଧାନସଭାରେ ନିରଙ୍କୁଶ ସଂଖ୍ୟା ଗରିଷ୍ଠ ଦଳରୂପେ ବିବେଚିତ ହୋଇଥିଲା । ମାନ୍ୟବର ରାଜ୍ୟପାଳ ଶ୍ରୀ ୟଶୱନ୍ତ ନାରାୟଣ ସୁଖଥାନ୍‌କରଙ୍କ ଆମନ୍ତ୍ରଣକ୍ରମେ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ଓଡିଶାର ନୂତନ ମନ୍ତ୍ରିମଣ୍ଡଳର ସଦସ୍ୟମାନେ ୧୯୬୧ ମସିହା ଜୁନ୍ ୨୩ ତାରିଖରେ ଶପଥ ଗ୍ରହଣ କଲେ । ବାସ୍ତବିକ ଏହି ମନ୍ତ୍ରିମଣ୍ଡଳ ସମୟରେ ଓଡିଶାରେ ନବନିର୍ମାଣର ସୁବର୍ଣ୍ଣ ଯୁଗ ଆରମ୍ଭ ହେଲା ।

ଶିଳ୍ପ ପ୍ରସାର ଓ ବାଣିଜ୍ୟ ବ୍ୟବସାୟ ପାଇଁ ବିଶେଷ ଦୃଷ୍ଟି ଦିଆଗଲା । ବିଜୁବାବୁ ମୁଖ୍ୟମନ୍ତ୍ରି ଦାୟିତ୍ୱ ନେବା ପରେ ବହୁ କ୍ରାନ୍ତିକାରୀ ଯୋଜନା ହାତକୁ ନେଲେ । ପ୍ରଧାନମନ୍ତ୍ରି ପଣ୍ଡିତ ନେହେରୁଙ୍କ ସହିତ ଘନିଷ୍ଠ ସମ୍ପର୍କ ଥିବାରୁ ବିଜୁବାବୁ ନିଜର ସ୍ୱପ୍ନର ଓଡିଶା ଗଠନ ପାଇଁ ଅଣ୍ଟା ଭିଡିଲେ । ସମୃଦ୍ଧିଶାଳୀ ଓଡିଶା ଗଠନ ନିମନ୍ତେ ପାରାଦ୍ୱୀପଠାରେ ଭାରତର ଗଭୀରତମ ବନ୍ଦର ଓ ଏହା ସହିତ ସଂଯୋଗ କରୁଥିବା ଏକ୍ସପ୍ରେସ ହାଇୱେ ନିର୍ମାଣ ବିଜୁବାବୁଙ୍କ ମନ୍ତ୍ରିମଣ୍ଡଳର ଅତି ଉତ୍କୃଷ୍ଟ ଓ ଉଲ୍ଲେଖଯୋଗ୍ୟ କାର୍ଯ୍ୟ ଥିଲା । ଏହି ଦୁଇ ପ୍ରକଳ୍ପ ଓଡିଶା ପକ୍ଷେ ଅତ୍ୟନ୍ତ ବ୍ୟୟ ବହୁଳ ଥିଲା । କାରଣ ସେତେବେଳେ (୧୯୬୧–୬୨) ବର୍ଷର ମୋଟ ରାଜସ୍ୱ ମାତ୍ର ୫୫ କୋଟି ୨୦ ଲକ୍ଷ ଥିଲା ।

ବିଜୁ ବାବୁ ମୁଖ୍ୟମନ୍ତ୍ରି ଦାୟିତ୍ୱ ନେଲା ବେଳକୁ ଦେଶରେ ତୃତୀୟ ପଞ୍ଚବାର୍ଷିକ ଯୋଜନା ଆରମ୍ଭ ହୋଇଥାଏ । ଏହି ଦୁଇ ପ୍ରକଳ୍ପକୁ ଅନୁମୋଦନ କରିବା ପାଇଁ ଯୋଜନା କମିଶନକୁ ପ୍ରସ୍ତାବ ଦିଆଗଲା । ମାତ୍ର ଯୋଜନା କମିଶନ ଏହାକୁ ଅନୁମୋଦନ କଲେ ନାହିଁ କିମ୍ବା ଏଥିପାଇଁ ବଜେଟରେ ଅର୍ଥ ବ୍ୟବସ୍ଥା କଲେ ନାହିଁ । ବରଂ କମିଶନ ଏହାକୁ ଏକ ଅବାସ୍ତବ ପରିକଳ୍ପନା ବୋଲି କହିଥିଲେ । ମାତ୍ର ବିଜୁବାବୁ ସେଥିରେ ଦବିଗଲେ ନାହିଁ । ତାଙ୍କର ବିଶ୍ୱାସ ଥିଲା ବନ୍ଦର ଓ ଏକ୍ସପ୍ରେସ ୱେ ନିର୍ମାଣ ଶେଷ ହେଲେ ପ୍ରଧାନମନ୍ତ୍ରି ପଣ୍ଡିତ ନେହେରୁଙ୍କୁ ପ୍ରଭାବିତ କରି ତାକୁ କେନ୍ଦ୍ରୀୟ ପ୍ରକଳ୍ପ କରାଇ ଦେବେ । ଦୀର୍ଘ ଦିନରୁ ଜାରି ରହିଥିବା ପରୀକ୍ଷଣ, ନିରୀକ୍ଷଣ, ସର୍ବେକ୍ଷଣକୁ ପଛରେ ପକାଇ (Now or Never) 'ଏବେ ଅବା କେବେ ନୁହେଁ' ନୀତିରେ ଅଟଳ ରହି ପଦକ୍ଷେପ ନେଲେ । ସମାନ୍ତରାଳଭାବେ ବନ୍ଦର ଓ ଏକ୍ସପ୍ରେସ ୱେ ନିର୍ମାଣ ପାଇଁ ନିର୍ଦ୍ଦେଶ ଦେଲେ ।

ପ୍ରୟୋଗାତ୍ମକ ବିଜ୍ଞାନରେ ପାରଦର୍ଶିତା ଥିବା ଇଂଲଣ୍ଡର (Rendel, Palmer & Tritton) ରାଣ୍ଡଲ, ପାମର ଆଣ୍ଡ ଟ୍ରିଟନ୍ ନାମକ ଏକ ବୈଷୟିକ ସଂସ୍ଥାକୁ ବନ୍ଦର ନିର୍ମାଣ ନିମନ୍ତେ ଚୟନ କରାଗଲା । ଏହି ସଂସ୍ଥାକୁ ବନ୍ଦରର ନକ୍ସା, ପ୍ରକଳ୍ପର ନିର୍ଦ୍ଦିଷ୍ଟ ରୂପରେଖ ପ୍ରସ୍ତୁତି, ବ୍ୟୟ ଅଟକଳ ଓ ନିର୍ମାଣ କାର୍ଯ୍ୟ ତଦାରଖ ଦାୟିତ୍ୱ ଅର୍ପଣ କରାଯିବା ପ୍ରସ୍ତାବ ମନ୍ତ୍ରିମଣ୍ଡଳରେ ଗୃହୀତ ହୋଇଗଲା । ୧୯୬୧ ମସିହା ନଭେମ୍ବର ୨୪ ତାରିଖ ଦିନ ଓଡିଶା ସରକାର ଏବଂ ଆର.ପି.ଟି, (R.P.T) ୧୨୫ ଭିକ୍ଟୋରିଆ ଷ୍ଟ୍ରିଟ, ଲଣ୍ଡନ ମଧ୍ୟରେ ଆବଶ୍ୟକୀୟ ଚୁକ୍ତିନାମା ସ୍ୱାକ୍ଷରିତ ହୋଇଗଲା । ବିଜୁବାବୁଙ୍କ ପରିକଳ୍ପନା ଅନୁଯାୟୀ ୧୯ଟି ସାଧାରଣ ପଣ୍ୟ ବର୍ଥ, ୩ଟି ଲୁହାପଥର ବର୍ଥ, ଦୁଇ ବର୍ଥ ବିଶିଷ୍ଟ ଗୋଟିଏ ତୈଳ ଡକ୍ ଓ ଗୋଟିଏ ସାର ବର୍ଥ ବ୍ୟବସ୍ଥା ରହିଲା । ଏତଦ୍‌ବ୍ୟତୀତ ଦୁଇଟି ଡ୍ରାଇଡକ୍, ଆଧୁନିକ କଳକାରଖାନା ସହିତ ଆଧୁନିକ ସହର ପାଇଁ ମଧ୍ୟ ଯୋଜନା ରହିଲା । ପଣ୍ୟ ରଖିବା ପାଇଁ ପଣ୍ୟାଗାର ଓ ଖୋଲାସ୍ଥାନ ସହିତ ପଣ୍ୟ ଖଲାସ ଓ ବୋଝାଇ ନିମିତ୍ତ ଆଧୁନିକ ଯନ୍ତ୍ରପାତିର ବ୍ୟବସ୍ଥା ସାଙ୍ଗକୁ ତାଳଦଣ୍ଡା କେନାଲର ସମ୍ପ୍ରସାରଣ, ବିଦ୍ୟୁତ ସଂଯୋଗ, ଗମନା ଗମନ ଓ ପରିବହନ ପାଇଁ ରାସ୍ତାଘାଟ ନିର୍ମାଣର ଯୋଜନା ସ୍ଥାନ ପାଇଲା । ଏହିସବୁ ନିର୍ମାଣ ପ୍ରକ୍ରିୟାର ସ୍ତର କ୍ରମରେ ପ୍ରଥମ ପର୍ଯ୍ୟାୟ ନିର୍ମାଣ କାର୍ଯ୍ୟ ବାବଦରେ ୨ କୋଟି ୬୭ ଲକ୍ଷ ଟଙ୍କାର ବୈଦେଶିକ ମୁଦ୍ରାସହ ମୋଟ ୧୬ କୋଟି ୨୦ ଲକ୍ଷ ଏବଂ ଏକ୍ସପ୍ରେସ ୱେ ପାଇଁ ୭ କୋଟି ଟଙ୍କା ବ୍ୟୟ ଅଟକଳ ସହ ୩୦ ମାସ ମଧ୍ୟରେ ବନ୍ଦରକୁ କାର୍ଯ୍ୟକ୍ଷମ କରାଯିବାକୁ ସମୟ ଧାର୍ଯ୍ୟ କରାଗଲା ।

ଅନ୍ୟ ପକ୍ଷରେ ପାରାଦ୍ୱୀପ ବନ୍ଦରର ଶୁଭଦେବା ପାଇଁ ପ୍ରଧାନମନ୍ତ୍ରି ପଣ୍ଡିତ ନେହେରୁଙ୍କୁ ଆମନ୍ତ୍ରଣ କରାଗଲା । ବିଜୁବାବୁ ପଣ୍ଡିତ ନେହେରୁଙ୍କ ଉତ୍ତମ ସାନ୍ନିଧ୍ୟ ଲାଭ କରିପାରିଥିଲେ । ତିନିମୂର୍ତ୍ତି ଭବନ (ପ୍ରଧାନମନ୍ତ୍ରିଙ୍କ ସରକାରୀ ବାସଭବନ) କୁ ତାଙ୍କର ଅବାଧ ପ୍ରବେଶ ଥିଲା । ବିଜୁବାବୁ ଚାହୁଁଥିଲେ ୧୯୬୨ ମସିହା ବର୍ଷ ଆରମ୍ଭରେ ଶୁଭ କାର୍ଯ୍ୟ କରିବା ପାଇଁ କିନ୍ତୁ ବର୍ଷ ପହିଲା ତାରିଖରେ ଦିଲ୍ଲୀରେ ସ୍ୱତନ୍ତ୍ର କାର୍ଯ୍ୟକ୍ରମରେ ଭାଗନେବା ସହ ୪ ତାରିଖରେ ବିହାରର ପାଟନାଠାରେ ନିଖିଳ ଭାରତ ଜାତୀୟ କଂଗ୍ରେସ ସାଧାରଣ ଅଧିବେଶନରେ ପ୍ରଧାନମନ୍ତ୍ରିଙ୍କ ଯୋଗଦେବା କାର୍ଯ୍ୟକ୍ରମ ସ୍ଥିର ହୋଇସାରିଥାଏ ।

ତଥାପି ବିଜୁବାବୁଙ୍କ ଅନୁରୋଧକୁ ଏଡାଇ ନପାରି, ପ୍ରଧାନମନ୍ତ୍ରି ପ୍ରଥମେ ଓଡିଶା ଆସି ବନ୍ଦରର ଶିଳାନ୍ୟାସ ଉତ୍ସବ ପରେ ଭୁବନେଶ୍ୱରରୁ ପାଟନା ଅଭିମୁଖେ ଗସ୍ତ କରିବାର କାର୍ଯ୍ୟକ୍ରମ ସ୍ଥିର ହୋଇଗଲା ।

କହିବା ବାହୁଲ୍ୟ, ପାରାଦ୍ୱୀପ ବନ୍ଦର ଶୁଭଦାନ ଉତ୍ସବ ପଛରେ ରହିଯାଇଥିବା ଘଟଣାବଳୀ କେବଳ ରୋଚକ ନୁହେଁ ବିସ୍ମୟକର ମଧ୍ୟ । ବିଜୁବାବୁଙ୍କ ଦୂରଦୃଷ୍ଟି ଯୋଗୁଁ ଖୁବ୍ କମ ସମୟ ମଧ୍ୟରେ ପ୍ରସ୍ତୁତି ପର୍ବ ସମ୍ଭବ ହୋଇ ପାରିଥିଲା । କେହି ବିଶ୍ୱାସ କରନ୍ତୁ ଅବା ନ କରନ୍ତୁ ଏଥିପାଇଁ ଯେଉଁ ନିର୍ମାଣ ମୂଳକ କାର୍ଯ୍ୟ ଚାଲିଲା ତାହା ଆଖିପିଛୁଳାକେ ହୋଇଯାଉଥିଲା । ଏହି ସମୟରେ ପାରାଦ୍ୱୀପ ଥିଲା ଏକ ଅଗମ୍ୟ ତଥା ଦୁର୍ଗମ ଅଞ୍ଚଳ । ନେହେରୁଙ୍କ ଆସିବା ବେଳକୁ ଏଠାରେ ପ୍ରଧାନମନ୍ତ୍ରିଙ୍କ ବାସୋପଯୋଗୀ ଏକ ଦ୍ୱିତଳ ପ୍ରାସାଦ ନିର୍ମାଣ କରାଯାଇ ତା'ର ନାମ ରଖାଯାଇଥିଲା 'ନେହେରୁ ନିବାସ' । ଅଳ୍ପ ସମୟ ମଧ୍ୟରେ ପଚାଶ ଷାଠିଏ ମାଇଲ ଟେଲିଫୋନ ଓ ବିଦ୍ୟୁତ ସଂଯୋଗ ସ୍ଥାପନ କରାଯାଇଥିଲା । କଟକଠାରୁ କୁଜଙ୍ଗ ପର୍ଯ୍ୟନ୍ତ ପ୍ରମୁଖ ବଜାରଗୁଡିକ ପାର୍ଶ୍ୱରେ ରାସ୍ତା ଆଲୋକୀକରଣ ସାଙ୍ଗକୁ ବିଦ୍ୟୁତ କେନ୍ଦ୍ରମାନ ସ୍ଥାପନ କରାଯାଇ ପାରାଦ୍ୱୀପର ବିଭିନ୍ନ ସ୍ଥାନକୁ ବିଦ୍ୟୁତ ଯୋଗାଇ ଦିଆଯାଇଥିଲା । ସେତେବେଳେ ନିର୍ବାହୀ ଯନ୍ତ୍ରୀ ଏନ୍.ସି. ଦାସଙ୍କୁ ସମସ୍ତ ଦାୟିତ୍ୱ ଦିଆଯାଇଥିଲା । କୁଜଙ୍ଗଠାରୁ ଚଉମୁହାଣି ପ୍ରାୟ ୭ ମାଇଲ ମାଟି ରାସ୍ତା ଏବଂ ନେହେରୁ ନିବାସଠାରୁ ଶୁଭଦାନ ସ୍ଥଳ ୩ କି.ମି. ରାସ୍ତା ପଥର ଓ ମୋରମ ପକାଯାଇ ଚଳନୀୟ ପକ୍କା ରାସ୍ତା ନିର୍ମାଣ କରାଯାଇଥିଲା । ପାରାଦ୍ୱୀପଠାରେ ବଡ ବଡ କେତୋଟି ଟିଣ ସେଡ୍ ସହିତ ଆଡମ୍ବରପୂର୍ଣ୍ଣ ତୋରଣ ଏବଂ ଏକ ଶୁଭ ସ୍ତମ୍ଭ 'ଜବାହାର ମୀନାର' ନିର୍ମିତ ହୋଇଥିଲା ।

ପ୍ରଧାନମନ୍ତ୍ରି ପାରାଦ୍ୱୀପ ଯିବା ରାସ୍ତାରେ ତାଙ୍କୁ ଭବ୍ୟ ସମ୍ବର୍ଦ୍ଧନା ଦେବା ନିମନ୍ତେ ପଥପ୍ରାନ୍ତରେ ରଘୁନାଥପୁର, ତିର୍ତୋଲ ଓ କୁଜଙ୍ଗରେ ତ୍ରୁଟି ବିହୀନ ଭାବେ ସଭାମାନ ଆୟୋଜିତ ହୋଇଥିଲା । ସଭାଗୁଡିକରେ ବିପୁଳ ଜନସମାଗମ ଆଉ ରାସ୍ତା ପାର୍ଶ୍ୱରେ ଲୋକମାନଙ୍କର ସମ୍ବର୍ଦ୍ଧନା ଯୋଗୁଁ କାର୍ଯ୍ୟକ୍ରମରେ ବିଳମ୍ବ ଘଟିଥିଲା । କୁଜଙ୍ଗ ସଭା ଶେଷ ବେଳକୁ ରାତିର ଦ୍ୱିତୀୟ ପହର ଅତିକ୍ରାନ୍ତ ହୋଇଯାଇଥିଲା । ସଡକ ପଥର ସୁବିଧା ନଥିବାରୁ ଅନନ୍ତପୁର ଲକ୍ (ଚଉମୁହାଣି) ଠାରୁ ଜଳ ପଥରେ ପାୱାର ବୋଟ ସାହାଯ୍ୟରେ ପ୍ରଧାନମନ୍ତ୍ରିଙ୍କ ଯିବାର ବ୍ୟବସ୍ଥା କରାଯାଇଥାଏ । ରାତି ପ୍ରାୟ ୧୦ଟା ସମୟରେ ଜଳଯାତ୍ରା ଆରମ୍ଭ ହୋଇଥିଲା । ଦେଖିବାକୁ ଗଲେ, ଏହି ଜଳଯାତ୍ରା ଓଡିଶା ବିକାଶ ପ୍ରକ୍ରିୟାରେ ଏକ ନିର୍ଣ୍ଣାୟକ ଯାତ୍ରା ସାବ୍ୟସ୍ତ ହୋଇଥିଲା ।

ଜଳଯାତ୍ରାର ଅବଧି ପାଖାପାଖି ଦୁଇଘଣ୍ଟା ଥିଲା । ଏହି ସମୟଟି ପ୍ରଧାନମନ୍ତ୍ରିଙ୍କ ସହିତ ନିରୋଳା ପରିବେଶରେ କଥାବାର୍ତ୍ତା କରିବାର ଅପୂର୍ବ ସୁଯୋଗ ସୃଷ୍ଟି କରିଥିଲା । ବିଜୁବାବୁ ଏହି ସୁଯୋଗକୁ ହାତଛଡା ନ କରିବା ପାଇଁ ପୂର୍ବରୁ ମନସ୍ଥ କରିଥାନ୍ତି । ପାରାଦ୍ୱୀପ ବନ୍ଦର ପ୍ରକଳ୍ପ, ଏକ୍ସପ୍ରେସ ୱେ ତଥା ରାଜ୍ୟର ବିଭିନ୍ନ ଉନ୍ନୟନ କାର୍ଯ୍ୟ ସମ୍ବନ୍ଧରେ ଗୋଟିଏ ସଂକ୍ଷିପ୍ତ ନୋଟ ଓ ଆବଶ୍ୟକ ନକ୍ସା ପ୍ରସ୍ତୁତ କରି ପାଖରେ ରଖିଥାନ୍ତି । ଜଳଯାତ୍ରା ବେଳେ ପ୍ରଧାନମନ୍ତ୍ରିଙ୍କ ଗହଣରେ ମୁଖ୍ୟମନ୍ତ୍ରିଙ୍କ ସମେତ ଉପ-ମୁଖ୍ୟମନ୍ତ୍ରି ବୀରେନ ମିତ୍ର ଓ ବନ୍ଦର ବିଭାଗ ମନ୍ତ୍ରି ନୀଳମଣି ରାଉତରାୟ ଥିଲେ ।

ସମୟ ପୌଷମାସ ଶୁକ୍ଳପକ୍ଷ ସଂଧ୍ୟା ଅତିକ୍ରାନ୍ତ । ମହାନଦୀ, ଲୁଣା, ପାଇକା, ଚିତ୍ରୋତ୍ପଳା ଚାରି ନଦୀର ମୁହାଣ ସ୍ଥଳ ଚଉମୁହାଣି ଏକ ଉପସାଗରର ଭ୍ରମ ସୃଷ୍ଟି କରୁଥାଏ । ନିର୍ମଳ ଆକାଶରେ ତ୍ରୟୋଦଶୀ ତିଥିର ଚନ୍ଦ୍ରାତପ ଏକ ନିଆରା ଅନୁଭବ ଆଣି ଦେଉଥାଏ । ସାମୁଦ୍ରିକ ପ୍ରତିକୂଳ ସ୍ରୋତ ଓ ଲହରୀର ବେଗ ମାଡରେ ଦୋଳାୟିତ ପାୱାର ବୋଟଟି ଆଗେଇ ଚାଲିଥାଏ । ଶୀତଳ ସମୀରଣରେ ଥାଏ ପଥକ୍ଲାନ୍ତ ହରି ନେବାର ପ୍ରତିଶ୍ରୁତି । ଶାନ୍ତ ମନୋରମ ପରିବେଶ ସହିତ ନୀଳ ଜଳରାଶିର କଳକଳ ସଂଗୀତରେ ଥାଏ ଆମନ୍ତ୍ରଣର ଭାବ । ଦିଗନ୍ତବିସ୍ତାରୀ ସମୁଦ୍ରର ଶୋଭା ଉପଭୋଗ କରିବା ସହିତ କର୍ମକ୍ଳାନ୍ତ ପ୍ରଧାନମନ୍ତ୍ରି ପ୍ରକୃତି

କୋଳରେ ହଜିଯାଇଥାନ୍ତି । ଏହି ସମୟରେ ରୋଚକ ଘଟଣାଟି ଘଟିଲା ଯାହା କେବଳ ପାରାଦ୍ୱୀପ ନୁହେଁ ଓଡିଶା ଇତିହାସରେ ଅନାଲୋଚିତ ସ୍ମରଣୀୟ ଘଟଣା ହୋଇ ରହିଛି । ଘଟଣାଟିକୁ ଅତି ନିକଟରୁ ପ୍ରତ୍ୟକ୍ଷ କରିଥିବା ବନ୍ଦର ବିଭାଗ ମନ୍ତ୍ରି ନୀଳମଣି ରାଉତରାୟ ତାଙ୍କର 'ସ୍ମୃତି ଓ ଅନୁଭୂତି' ପୁସ୍ତକରେ ଏହିପରି ଲିପିବଦ୍ଧ କରିଛନ୍ତି–

'ପଣ୍ଡିତ ନେହେରୁ ଚା' ଖାଇସାରି ସିଗାରେଟ ଧରି ଡେକ ଉପରେ ଗୋଟିଏ ଆରାମ୍ ଚେୟାରରେ ଅତି ହାଲୁକା ମନରେ ବିଶ୍ରାମ ନେଉଥାନ୍ତି । ଏହି ସମୟରେ ବିଜୁବାବୁ ତାଙ୍କର ନକ୍ସା ଓ କାଗଜପତ୍ର ଧରି ତାଙ୍କ ପାଖରେ ଉପସ୍ଥିତ ହୋଇଥିଲେ, ଓଡିଶାର କ୍ଷିପ୍ର ଅଭିବୃଦ୍ଧି, ଉନ୍ନୟନ ସମନ୍ଧୀୟ ନକ୍ସା ଓ କାଗଜପତ୍ର ପଣ୍ଡିତ ନେହେରୁଙ୍କୁ ଦେଖାଇବା ପାଇଁ ଉଦ୍ୟମ କରିଥିଲେ । ହଠାତ୍ ନେହେରୁ ଚିଡି ଉଠି ଚିତ୍କାର କରି କହିଲେ 'You damn fool, you have no sense of proportion. I am having a little relaxation and you chose to disturb me' ଏକଥା ଶୁଣି ଆମେ ଛାନିଆଁ ହୋଇଯାଇଥିଲୁ । କିନ୍ତୁ ଶ୍ରୀ ବିଜୁ ପଟ୍ଟନାୟକ ଘାବରେଇବା ଲୋକ ନୁହଁନ୍ତି ସେ ମଧ ପାଟି କରି କହିଥିଲେ 'A slight glance of the Prime Minister at this, can change the fate of this backward state and you are reluctant to do that. After Neheru, will India ever have a Prime Minister who will rise above his own state interest and look to the interest of poorstate like Orissa?' ଏକଥା ଶୁଣି ନେହେରୁ ଠୋ ଠୋ ହସି ଉଠି କହିଲେ 'Oh! You know the trick' ତା ପରେ ସେ ଅତି ପ୍ରଫୁଲ୍ଲ ଚିତ୍ତ ଓ ହସହସ ମୁଖରେ ଆମ୍ଭମାନଙ୍କ ଆଡେ ଅନାଇ ନକ୍ସାଟିକୁ ଦେଖିଥିଲେ ଓ ନୋଟଟିକୁ ପଢିଥିଲେ । ଓଡିଶାର ଉନ୍ନୟନ ଓ ତତ୍–ସମ୍ବନ୍ଧୀୟ ପ୍ରାକୃତିକ ସମ୍ପଦ ବିଷୟରେ ବିଜୁ ପଟ୍ଟନାୟକ କେତେକ କଥା ତାଙ୍କୁ କହିଥିଲେ । ନେହେରୁଙ୍କ ଅକସ୍ମାତ କ୍ରୋଧ ନିମିଷକ ମଧରେ ଉଭେଇ ଯାଇଥିଲା ଓ କ୍ରୋଧ ପରିବର୍ତ୍ତେ ପ୍ରଶାନ୍ତ ଚିତ୍ତରେ ସେ ସମସ୍ତ ବିଷୟ ହୃଦୟଙ୍ଗମ କରିଥିଲେ । ବସ୍ତୁତଃ ଘଟଣାଟି ନେହେରୁଙ୍କୁ ଗଭୀର ଭାବେ ପ୍ରଭାବିତ କରିଥିଲା । ବୋଧହୁଏ ପାଚୁର୍ଯ୍ୟର ପାହାଡ ତଳେ ଦାରିଦ୍ର୍ୟର ଏକ ବିଶାଳ ଉପତ୍ୟକାକୁ ପ୍ରଧାନମନ୍ତ୍ରି ଉପଲବ୍ଧି କରିପାରିଥିଲେ । ଖଣିଜ, ଜଳ ଓ ଜଙ୍ଗଲ ସମ୍ପଦର ସୁବିନିଯୋଗ କରି ଓଡିଶା ଏକ ଉନ୍ନତ ରାଜ୍ୟରେ ପରିଣତ ହୋଇପାରିବ ବୋଲି ସେ ନିଶ୍ଚିତ ଥିଲେ । ପାରାଦ୍ୱୀପରେ ପହଞ୍ଚି ମଧରାତ୍ରିର ଅବ୍ୟବହିତ ପୂର୍ବରୁ ତାଙ୍କ ପାଇଁ ନିର୍ମିତ 'ନେହେରୁ ନିବାସ'କୁ ଉଦ୍‌ଘାଟନ୍ କରିଥିଲେ ଓ ରାତ୍ରି ଭୋଜନ ପରେ ବିଶ୍ରାମ ନେଇଥିଲେ ।

ପରଦିନ ପୌଷ ଶୁକ୍ଳ ଦି୨୦ନ ୧୩୬୯ ସାଲ ଦିବା ଆଠଟାରେ ଶିଳାନ୍ୟାସ ଉତ୍ସବ ଅନୁଷ୍ଠିତ ହେଲା । ବର୍ତ୍ତମାନ ଏକ ନମ୍ବର ଗେଟ ପାଖ ସମୁଦ୍ରକୂଳ ବାଲୁକା ପ୍ରାନ୍ତରରେ ନିର୍ମିତ ଶୁଭସ୍ତମ୍ଭ 'ଜବାହାର ମୀନାର' ରେ ସ୍ଥାନିତ ଶୁଭ ଫଳକଟିକୁ ପ୍ରଧାନମନ୍ତ୍ରି ପଣ୍ଡିତ ନେହେରୁ ଉନ୍ମୋଚନ କରିଥିଲେ । ସାଥିରେ ଥିଲେ ଓଡିଶାର ରାଜ୍ୟପାଳ ଶ୍ରୀ ୟେଶୱନ୍ତ ନାରାୟଣ ସୁଖଥାନ୍‌କର, ମୁଖ୍ୟମନ୍ତ୍ରି ଶ୍ରୀ ବିଜୁ ପଟ୍ଟନାୟକ, ବନ୍ଦର ବିଭାଗ ମନ୍ତ୍ରି ଶ୍ରୀ ନୀଳମଣି ରାଉତରାୟ ଓ ବିଧାନସଭାର ବାଚସ୍ପତି ଶ୍ରୀ ଲିଙ୍ଗରାଜ ପାଣିଗ୍ରାହୀ । ଗୁରୁତ୍ୱପୂର୍ଣ୍ଣ କଥା ହେଲା, ପାରାଦ୍ୱୀପ ବନ୍ଦର ଶୁଭଦାନ ଅନ୍ୟ ପ୍ରକଳ୍ପ ଶୁଭଦାନଠାରୁ ସମ୍ପୂର୍ଣ୍ଣ ଅଲଗା ଥିଲା । ସାଧାରଣତଃ କୌଣସି ପ୍ରକଳ୍ପ ଶୁଭ ଅବସରରେ ଯେପରି ପାରମ୍ପରିକ ରୀତିରେ ମାର୍ବଲ ପଥରରେ ଲେଖାଯାଏ, ସେପରି ରୀତିରେ ଏଠାରେ ଭିତ୍ତି ପ୍ରସ୍ତର ସ୍ଥାପନ ହୋଇ ନଥିଲା । ସେଥିରେ ଲେଖାଥିଲା ଏକ ହୃଦୟସ୍ପର୍ଶୀ ବାଣୀ ଯାହା ଏବେବି ରହସ୍ୟାବୃତ ହୋଇରହିଛି । ପାରାଦ୍ୱୀପର ଏହି ଜନ୍ମ ଜାତକଟି ଏବେବି ନେହେରୁ ବଙ୍ଗଳା ସାମ୍ନାରେ ଶୋଭା ପାଉଛି । ଏଥିରେ ନିମ୍ନମତେ ହିନ୍ଦୀ, ଓଡିଆ ଓ ଇଂରାଜୀ ଭାଷାରେ ଲେଖାଅଛି –

ଏହାହିଁ ମହାଜାତିର ନିର୍ଦ୍ଦେଶ – ପୁଣି ଏକ ବିରାଟ ଅଭିଯାନ ପଥରେ ମୋର ଏ ଆହ୍ୱାନ ।

'Willed by the people, I commend you to this yet another National Adventure'.

ପ୍ରତିଷ୍ଠା ପର୍ବ ସମାପ୍ତ ପରେ ରାଜ୍ୟ ପ୍ରଶାସନରେ ତତ୍ପରତା ପ୍ରକାଶ ପାଇଲା । ତ୍ୱରିତ ପଦକ୍ଷେପ ନେବାପାଇଁ ମୁଖ୍ୟମନ୍ତ୍ରି ନିର୍ଦ୍ଦେଶ ଦେଲେ । ପ୍ରଥମତଃ ବନ୍ଦର ନିର୍ମାଣରେ ଅଭିଜ୍ଞତା ଥିବା ଜଣେ ଦକ୍ଷ, କର୍ମନିଷ୍ଠ, ପ୍ରଗତିଶୀଳ ଇଞ୍ଜିନିୟରଙ୍କୁ ଖୋଜା ପଡିଲା । ଦିଲ୍ଲୀ ମହଲରୁ ବିଜୁବାବୁ ଜାଣିବାକୁ ପାଇଲେ, ବମ୍ବେ, ମାଡ୍ରାସ ଓ ବିଶାଖାପାଟଣା ବନ୍ଦରରେ ଚିଫ୍ ଇଞ୍ଜିନିୟର ଭାବେ କାର୍ଯ୍ୟକରି ନିକଟରେ ଅବସର ନେଇଥିବା ଶ୍ରୀ ଏ. ଶ୍ରୀନିବାସନ ପାରାଦ୍ୱୀପ ପ୍ରକଳ୍ପ ପାଇଁ ଯୋଗ୍ୟ ବିବେଚିତ ହୋଇପାରିବେ । ସେତେବେଳେ ଶ୍ରୀ ବି.ଶିବରମଣ, ଆଇ.ସି.ଏସ୍. ଥାଆନ୍ତି ରାଜ୍ୟର ମୁଖ୍ୟ ଶାସନ ସଚିବ (Chief Secretary) । ତାଙ୍କରି ଯୋଗାଯୋଗ ମାଧ୍ୟମରେ ମୁଖ୍ୟମନ୍ତ୍ରିଙ୍କ ସହିତ ଶ୍ରୀନିବାସନଙ୍କ ସାକ୍ଷାତ୍କାର ଅନୁଷ୍ଠିତ ହେଲା । ପ୍ରକଳ୍ପ ସମ୍ବନ୍ଧିତ ସମସ୍ତ ତଥ୍ୟ ଅବଗତ ପରେ ଶ୍ରୀନିବାସନ ଧାର୍ଯ୍ୟ ସମୟ ମଧ୍ୟରେ ବନ୍ଦର ନିର୍ମାଣ କାର୍ଯ୍ୟ ସାରିବାର ଭରସା ଓ ପ୍ରତିଶ୍ରୁତି ଦେଲେ । ତେବେ ଅମଲାତାନ୍ତ୍ରିକ ଚିରାଚରିତ ଧାରାରୁ ବାହାରକୁ ଯାଇ ପ୍ରକଳ୍ପର ପ୍ରଶାସନିକ ଓ ଆର୍ଥିକ ସ୍ୱାଧୀନ କ୍ଷମତା ଶ୍ରୀନିବାସନଙ୍କଠାରେ ନ୍ୟସ୍ତ ରହିବା ସହିତ ସେ କେବଳ ମୁଖ୍ୟମନ୍ତ୍ରିଙ୍କ ପାଖରେ ଉତ୍ତରଦାୟୀ ରହିବେ ବୋଲି ନିଷ୍ପତ୍ତି ହେଲା । ସଚିବାଳୟ ପଛପଟେ ଏକ ଲମ୍ବା ଆଜବେଷ୍ଟସ ଘରେ (Paradeep Port Project) ପାରାଦ୍ୱୀପ ପୋର୍ଟ ପ୍ରୋଜେକ୍ଟ କାର୍ଯ୍ୟାଳୟ ଖୋଲାଯାଇ କାର୍ଯ୍ୟ ଆରମ୍ଭ କଲା ।

ଏହି ସମୟ ବେଳକୁ ଓଡିଶାରେ କେତେଗୁଡିଏ ପ୍ରଗତିଶୀଳ-ପ୍ରକଳ୍ପ ଆରମ୍ଭ ହୋଇଥାଏ । ଆବଶ୍ୟକ ବୈଷୟିକ ପରାମର୍ଶ ସହ ଉତ୍ତମ ଶାସନ ବ୍ୟବସ୍ଥା ଓ ସହଯୋଗ ନିମନ୍ତେ ବିଜୁବାବୁ ଦେଶର ଶ୍ରେଷ୍ଠ ଇଞ୍ଜିନିୟର ଭାବେ ପ୍ରତିଷ୍ଠା ଲାଭ କରିଥିବା ଡକ୍ଟର ଅଯୋଧ୍ୟା ନାଥ ଖୋସଲାଙ୍କୁ ରାଜ୍ୟପାଳ କରି ଆଣିବାକୁ ପଣ୍ଡିତ ନେହେରୁଙ୍କୁ ନିବେଦନ କରି ସଫଳ ହୋଇଥିଲେ । ମାନ୍ୟବର ରାଜ୍ୟପାଳ ଶ୍ରୀ ସୁଖଥାନ୍କର ଓଡିଶାରୁ ବିଦାୟ ନେଇ ଚାଲିଗଲେ । ପରଦିନ ୧୯୬୨ ମସିହା ସେପ୍ଟେମ୍ବର ୧୬ ତାରିଖରେ ଡକ୍ଟର ଶ୍ରୀ ଖୋସଲା ଓଡିଶାର ମାନ୍ୟବର ରାଜ୍ୟପାଳ ଭାବେ ଯୋଗଦେଲେ । ଗୋଟିଏ ମାସ ପରେ ଅର୍ଥାତ ନଭେମ୍ବର ମାସ ୧୯ ତାରିଖରେ ପାରାଦ୍ୱୀପ ବନ୍ଦର ନିର୍ମାଣ କାର୍ଯ୍ୟ ଆରମ୍ଭ ହେଲା । ଅନୁରୂପ ଭାବେ ପାରାଦ୍ୱୀପକୁ ଖଣି ଅଞ୍ଚଳ ସହ ସଂଯୋଗ କରୁଥିବା ଏକ୍ସପ୍ରେସ୍ ୱେ ନିର୍ମାଣ କାର୍ଯ୍ୟ ମଧ୍ୟ ଆରମ୍ଭ ହୋଇଥିଲା । ପୂର୍ତ୍ତବିଭାଗ ମୁଖ୍ୟଯନ୍ତ୍ରୀ ଶ୍ରୀ ଆର୍ତ୍ତବନ୍ଧୁ ମହାନ୍ତିଙ୍କ ଅଧୀନରେ ରୁରାଲ ଇଂଜିନିୟରିଂ ୱାର୍କ୍ସ ଅର୍ଗାନାଇଜସେନ ସଂସ୍ଥା ଗଠନ କରାଯାଇ ରାସ୍ତା ନିର୍ମାଣ ଏବଂ ସେତୁ ନିର୍ମାଣ ଦାୟିତ୍ୱ ଓଡିଶା କନ୍ଷ୍ଟ୍ରକସନ କର୍ପୋରେସନକୁ ଦିଆଗଲା । ଦୈତାରି, ସୁକିନ୍ଦାଠାରୁ ପାରାଦ୍ୱୀପ ପର୍ଯ୍ୟନ୍ତ ୯୦ ଡିଗ୍ରୀ କୋଣ ପରିମାପିତ ଏକ ସରଳରେଖାରେ ସିଧାସଳଖ ରାସ୍ତା ନିର୍ମାଣ ହେବାପାଇଁ ସ୍ଥିର ହେଲା । ଏହାକୁ ମଧ୍ୟ ବିରୋଧ କରାଯାଇଥିଲା । କିନ୍ତୁ ବିଜୁବାବୁ ଏହା ପଛରେ ନିରନ୍ତର ଚେଷ୍ଟାକରି ସଫଳତା ହାସଲ କରିଥିଲେ ।

ଷାଠିଏ ବର୍ଷ ପୂର୍ବେ ବିଜୁବାବୁଙ୍କ ଏହି ଦୂରଦର୍ଶୀ ଯୋଜନା ଡ୍ରିମ୍ ପ୍ରୋଜେକ୍ଟ ଭାବେ ଓଡିଶାରେ ପ୍ରଥମଥର ପାଇଁ ୧୩୪.୦୪ କି.ମି. ଏ-୧ ଦୈତାରି-ପାରାଦ୍ୱୀପ ଏକ୍ସପ୍ରେସ୍ ହାଇୱେ ନାମରେ ଦୁଇଥାକିଆ ସଡକ ନିର୍ମିତ ହୋଇଥିଲା । ପରେ ଚଣ୍ଡିଖୋଲ-ପାରାଦ୍ୱୀପ ୭୮.୫୮ କି.ମି. ଦୈର୍ଘ୍ୟ ବିଶିଷ୍ଟ ସଡକ ୫ ନଂ (କ) ଏବଂ ବର୍ତ୍ତମାନ ୫୩ ନଂ ଜାତୀୟ ରାଜପଥରେ ପରିଣତ ହୋଇ ଓଡିଶାର ଅର୍ଥନୈତିକ ବିକାଶର ଏକ ପ୍ରମୁଖ ରାଜମାର୍ଗର ମାନ୍ୟତା ପାଇଛି । ଏହି ତ୍ୱରିତ ମାର୍ଗ ୧୯୬୫ ମସିହାରେ କେନ୍ଦ୍ର ସରକାରଙ୍କ ଅଧୀନକୁ ଆସି ୨୦୦୪ ମସିହାରେ ୫୨୫.୪୦ କୋଟି ଟଙ୍କା ବ୍ୟୟରେ ଏହାକୁ ଚାରିଥାକିଆ କରାଯାଇଥିଲା । ସଂପ୍ରତି ଏହି ରାଜମାର୍ଗ ସଂପ୍ରସାରିତ ହୋଇ ଆଠଲେନ୍ ହେବାକୁ ଯାଉଛି । ଓଡିଶାରେ ପ୍ରଥମଥର ପାଇଁ ରାସ୍ତାର ସମଗ୍ର ଅଞ୍ଚଳକୁ ଅତ୍ୟାଧୁନିକ ଏବଂ ସ୍ୱୟଂକ୍ରିୟ ପଦ୍ଧତିରେ ନିୟନ୍ତ୍ରଣ ନିମନ୍ତେ ବୈଷୟିକ ଜ୍ଞାନ କୌଶଳ ଉପଯୋଗ କରାଯାଉଛି । ଏହି ଦୋହରିକରଣ ବାବଦରେ ୩୩୨୨ କୋଟି ଟଙ୍କା ଖର୍ଚ୍ଚ କରାଯିବା ପାଇଁ ଅଟକଳ

କରାଯାଇଛି । ବର୍ତ୍ତମାନ ରାଜ୍ୟର ଏହି ରାଜମାର୍ଗରେ ୨୫ ରୁ ୩୦ ହଜାର ପିସିୟୁ ଇଉନିଟର ଗାଡି ମଟର ଅର୍ଥାତ ଦୈନିକ ୨୭ ରୁ ୨୮ ହଜାର ବିଭିନ୍ନ ଯାନ ବାହାନ ଚଳାଚଳ କରୁଛି । ପ୍ରସ୍ତାବିତ ୮ ଲେନ୍ ସଂପ୍ରସାରିତ ହେଲେ ଏହି ହାଇସ୍ପିଡ ରାଜମାର୍ଗରେ ମାଲବାହୀ ଯାନଗୁଡିକ ୧୨୦ ରୁ ୧୪୦ କି.ମି. ବେଗରେ ଯାତାୟାତ କରିପାରିବେ । ବର୍ତ୍ତମାନର ୪ ଲେନ୍ ବିଶିଷ୍ଟ ଜାତୀୟ ରାଜପଥ ୨୮ ମିଟର ଚଉଡା ଥିବାବେଳେ ପରିବର୍ଦ୍ଧିତ ୮ ଲେନ୍ ରାସ୍ତାର ଯେଉଁଠାରେ ସର୍ଭିସ୍ ରୋଡ ନାହିଁ ସେଠାରେ ୫୦ ମିଟର ଚଉଡା ଏବଂ ସର୍ଭିସ ରୋଡ ଥିବା ରାସ୍ତା ୨୮ ମିଟର ଚଉଡା ବିଶିଷ୍ଟ ହେବ । ୮ ଲେନ୍‌ର ଉଭୟ ପାର୍ଶ୍ୱରେ ପୁଣି ୭ ମିଟର ଚଉଡାର ସର୍ଭିସ ରୋଡ ରହିବ । ମୋଟ ଉପରେ କହିବାକୁ ଗଲେ ଏହି ଗୁରୁତ୍ୱପୂର୍ଣ୍ଣ ସଡକଟି ୧୨ ଲେନ୍ ହେବ । ତାତ୍ପର୍ଯ୍ୟପୂର୍ଣ୍ଣ ବିଷୟ ହେଉଛି ବିଜୁ ବାବୁ ୬୦ ବର୍ଷ ପୂର୍ବରୁ ଏହି ରାଜମାର୍ଗର ଭବିଷ୍ୟତକୁ ଆକଳନ କରିପାରିଥିଲେ ଏବଂ ଏହାର ସମ୍ପ୍ରସାରଣକୁ ଦୃଷ୍ଟିରେ ରଖି ଆବଶ୍ୟକ ପରିମାଣର ଜମି ଅଧିଗ୍ରହଣ କରିବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ଫଳରେ ଜମି ଅଧିଗ୍ରହଣ ସମସ୍ୟା ଏବେ ନାହିଁ । ବର୍ତ୍ତମାନ ସଡକର ଉଭୟ ପାର୍ଶ୍ୱରେ ଜାତୀୟ ରାଜପଥ କର୍ତ୍ତୃପକ୍ଷଙ୍କ ନିଜସ୍ୱ ଜମି ରହିଛି ।

ବିଡମ୍ବନାର ବିଷୟ ହେଉଛି ପାରାଦ୍ୱୀପ ବନ୍ଦର ପ୍ରକଳ୍ପ ଯୋଗୁଁ ବିଜୁବାବୁ ବହୁ ନିନ୍ଦା, ଅପବାଦ ପାଇଥିଲେ । ୧୯୬୭ ମସିହାରେ ତତ୍‌କାଳୀନ ସରକାରଙ୍କ ସୁପାରସ୍‌କ୍ରମେ ବିଜୁ ପଟ୍ଟନାୟକଙ୍କ ବିରୁଦ୍ଧରେ ଦୁର୍ନୀତି ଅଭିଯୋଗ ଯୋଗୁଁ ତଦନ୍ତ କମିଶନ ବସିଥିଲା । ଦିଲ୍ଲୀ ହାଇକୋର୍ଟର ଜଣେ ବିଚାରପତି ଶ୍ରୀ ଏଚ. ଆର. ଖାନ୍ନା ଜଣକିଆ କମିଶନ ରୂପେ ନିଯୁକ୍ତି ହୋଇଥିଲେ । ବିଚାରପତି ଶ୍ରୀ ଖାନ୍ନାଙ୍କୁ ସବୁକଥା ଅନୁଧ୍ୟାନ କରି ରିପୋର୍ଟ ଦେବାକୁ ୧୫ ମାସ ସମୟ ଲାଗିଥିଲା ।

ବିଚାରପତି ଶ୍ରୀ ଖାନ୍ନା ଅନେକ ସରଜମିନ ତଦନ୍ତ ପ୍ରସଙ୍ଗରେ କେନ୍ଦୁଝର ଜିଲ୍ଲାରେ ଥିବା କଳିଙ୍ଗ ଆଇରନ ଓ୍ୟାର୍କସ ଏବଂ ଖଣି ଅଞ୍ଚଳ ବୁଲି ଦେଖିଥିଲେ । ପାରାଦ୍ୱୀପ ବନ୍ଦର ଦେଖିବାକୁ ଯାଇ ସେ ସେଠାରେ ଦୁଇଦିନ ରହି ନାନାକଥା ଅନୁଧ୍ୟାନ କରିଥିଲେ ଓ ପାରାଦ୍ୱୀପ ବନ୍ଦର ଦେଖି ସେ ସ୍ତମ୍ଭୀଭୁତ ହୋଇଯାଇଥିଲେ । ବିଚାରପତି ଖାନ୍ନା କମିଶନଙ୍କ ରିପୋର୍ଟ ୧୯୬୯ ମସିହା ଜାନୁୟାରୀ ୧୫ ତାରିଖରେ ପ୍ରକାଶ ପାଇଥିଲା ।

କମିଶନ ତାଙ୍କ ରିପୋର୍ଟର ୮୧୦ ପୃଷ୍ଠାରେ ବିଜୁ ପଟ୍ଟନାୟକଙ୍କ ବ୍ୟକ୍ତିତ୍ୱକୁ ଉଚ୍ଚ ପ୍ରଶଂସା କରି ଲେଖିଛନ୍ତି ।

‘The need of Orissa is of a leader of great calibre, inspired by the cause, dedicated, devoted and determind, who may rouse the enthusiasm, which is so far dormant, of the masses, harness it to truthful activity and thus pave the way to economic betterment and future prosperity xxxxxx. Shree Pattnaik did commendable job in certain spheres by introducing an element of dynamism in the administration and the work he did by translating the idea of a Port at Paradeep into a living reality, is bound to make an impact on the history of Orissa and its future development xxxxxxx.

ବିଜୁ ବାବୁ କାମରାଜ ପ୍ଲାନ ଅନ୍ତର୍ଭୁକ୍ତ ଶ୍ରେଣୀୟ ନେତା ନଥିଲେ ମଧ୍ୟ କଂଗ୍ରେସକୁ ଶକ୍ତିଶାଳୀ ଏବଂ ଲୋକପ୍ରିୟ କରାଇବାକୁ ୧୯୬୩ ମସିହା ଅକ୍ଟୋବର ପହିଲା ତାରିଖରେ ମୁଖ୍ୟମନ୍ତ୍ରି ପଦରୁ ଇସ୍ତଫା ଦେଇଦେଲେ । ଶ୍ରୀ ବୀରେନ୍ ମିତ୍ର ମୁଖ୍ୟମନ୍ତ୍ରି ହେଲେ । ବିଜୁ ବାବୁ ଯୋଜନା ବୋର୍ଡ ଅଧକ୍ଷ ପଦରେ ରହି ସେ ଆରମ୍ଭ କରିଥିବା ସୁଦୁର ପ୍ରସାରୀ ଫଳପ୍ରସୁ ପ୍ରକଳ୍ପଗୁଡିକୁ ଶେଷ କରିବାକୁ ପଦକ୍ଷେପ ନେଲେ ।

ବିଜୁବାବୁଙ୍କ ବ୍ୟକ୍ତିଗତ ପ୍ରଚେଷ୍ଟା ଓ ପ୍ରଭାବ ବଳରେ ୧୯୬୬ ମସିହା ମାର୍ଚ୍ଚ ୧୨ ତାରିଖରେ ଯୁଗୋସ୍ଲୋଭିଆର ପ୍ରଧାନମନ୍ତ୍ରି ପିଟର ଷ୍ଟାମ୍ବୋଲିକ୍‌ଙ୍କ ଦ୍ୱାରା ପାରାଦ୍ୱୀପ ବନ୍ଦର ଉଦ୍‌ଘାଟିତ ହେଲା । ବନ୍ଦରର ପ୍ରଶାସନିକ ଦାୟିତ୍ୱ କେନ୍ଦ୍ର ସରକାରଙ୍କ ହାତକୁ ନେଇ ପରେ ମେଜର ପୋର୍ଟଟ୍ରଷ୍ଟ

ଆକ୍ଟ ବଳରେ ୦୧.୧୧.୬୭ରେ ଟ୍ରଷ୍ଟ ବୋର୍ଡ ଗଠନ କଲେ । ବର୍ତ୍ତମାନ ଏହାର ପ୍ରଶାସନିକ ବ୍ୟବସ୍ଥା ପାରାଦ୍ୱୀପ ବନ୍ଦର ପ୍ରାଧିକରଣ କର୍ତ୍ତୃପକ୍ଷଙ୍କ ଉପରେ ନ୍ୟସ୍ତ କରାଯାଇଛି ।

ଦିନଥିଲା ଯେତେବେଳେ କି ଆମ ଓଡିଶା ଜଗତରନାଥ ଜଗନ୍ନାଥଙ୍କ ନାମରେ ରାଜ୍ୟ ବାହାରେ ପରିଚିତ ହେଉଥିଲା ତା' ସହିତ ଓଡିଶା ଆଜି ବି ପାରାଦ୍ୱୀପ ବନ୍ଦର ଯୋଗୁଁ ସମଗ୍ର ପୃଥିବୀରେ ସୁପରିଚିତ । ତେବେ ପାରାଦ୍ୱୀପର ଜନ୍ମଜାତକରେ ଅଲିଖିତ ଥିବା ବହୁ ଐତିହାସିକ ଘଟଣା ଏବଂ ଦୁର୍ଘଟଣା ବନ୍ଦର ନିର୍ମାଣ ଓ ବିକାଶର ସମୟ ସାରଣୀ ମଧ୍ୟରେ ଘଟିଥିଲା ଯାହା, ଏବେବି ଲୋକଲୋଚନର ଅନ୍ତରାଳରେ ରହିଛି । ପ୍ରତିବାଦ, ପ୍ରତିରୋଧ, ପ୍ରତିଶୋଧ, ପ୍ରତିବନ୍ଧକ ସତ୍ତ୍ୱେ ଭାରତର ସବୁଠାରୁ ଗଭୀରତମ ବନ୍ଦର ପ୍ରତିଷ୍ଠା ଆଉ ରାଜ୍ୟ ପ୍ରାକୃତିକ ସମ୍ପଦର ଯଥାର୍ଥ ବିନିଯୋଗ ନିମନ୍ତେ ଏକ୍ସପ୍ରେସ ୱେ ନିର୍ମାଣ କେବଳ ବିଜୁବାବୁଙ୍କ ସାହସ, ସଂକଳ୍ପ ଓ ସଂଗ୍ରାମ ଯୋଗୁଁ ସମ୍ଭବ ହୋଇପାରିଥିଲା । ଏହା ସତ୍ୟ ଯେ, ପାରାଦ୍ୱୀପର ଧୂଳି, ମାଟି, ପାଣି ପବନରେ ବିଜୁବାବୁଙ୍କର ଯେଉଁ ଅମଳିନ ଊର୍ଜସ୍ୱଳ ସ୍ମୃତି ଲୁଚି ରହିଛି ତାହାର ଐତିହାସିକ ମୂଲ୍ୟାୟନ ଓ ଅନୁଶୀଳନ କରିବା ଆମ ପକ୍ଷେ ଧୃଷ୍ଟତା ହେବ । ପରନ୍ତୁ ବନ୍ଦର ନିର୍ମାଣରେ ତାଙ୍କର ନିଷ୍ଠାପର ଉଦ୍ୟମ, ଦୁଃସାହସିକ ପଦକ୍ଷେପ, ନିରବଚ୍ଛିନ୍ନ ପ୍ରଚେଷ୍ଟା ଓଡିଶା ଇତିହାସ ପୃଷ୍ଠାରେ ସବୁଦିନ ପାଇଁ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ ଏବଂ ସେ ସବୁକୁ ଓଡିଆ ଜାତି ସ୍ମୃତି ସମ୍ପୁଟରେ ସାଇତା ସମ୍ପଦ ରୂପେ ସାଇତିବ, ଏଥିରେ ସନ୍ଦେହ ନାହିଁ ।

ଅବସରପ୍ରାପ୍ତ ଯୋଗାଯୋଗ ଅଧିକାରୀ
ପାରାଦ୍ୱୀପ ବନ୍ଦର

❖ ❖ ❖

# ଓଡ଼ିଶାର ନୌବାଣିଜ୍ୟ : ସାଧବରୁ ଦାଦନ ପର୍ଯ୍ୟନ୍ତ

ଡଃ ବାସନ୍ତୀ ମହାନ୍ତି

ମହାଯାନ ବୌଦ୍ଧଗ୍ରନ୍ଥ ଅନୁସାରେ ଓଡ଼ିଶାକୁ ବେଢ଼ି ରହିଥିବା ମହୋଦଧିର ପ୍ରାଚୀନ ନାମ ଥିଲା ଉତ୍କଳ ସାଗର । ଉତ୍କଳ ସାଗର ଉପକୂଳ ଅଧିବାସୀ ଉତ୍କଳୀୟମାନେ ଜୀବନଜୀବିକା ଉତ୍କଳ ସାଗର ଉପରେ ନିର୍ଭର କରୁଥିଲେ । ଦୂରଦେଶମାନଙ୍କୁ ବୋଇତରେ ବାଣିଜ୍ୟ ବ୍ୟବସାୟ ପାଇଁ ଯାଉଥିଲେ ଦୂରଦେଶମାନଙ୍କରୁ ମଧ୍ୟ ବାଣିଜ୍ୟ ବ୍ୟବସାୟୀ ମାନଙ୍କ ପାଇଁ ଏହି ଉତ୍କଳ ସାଗର ଥିଲା ଏକ ପେଣ୍ଠ ସ୍ଥଳ । ବହୁ ପ୍ରାଚୀନ ଗ୍ରନ୍ଥମାନଙ୍କ, ଏପରିକି ପ୍ରାକ୍ ବୌଦ୍ଧ ଯୁଗରୁ ଉତ୍କଳର ସାଧବମାନେ ନୌବାଣିଜ୍ୟ କରୁଥିବାର ପ୍ରମାଣ ରହିଛି । ଦକ୍ଷିଣ-ପୂର୍ବ ଏସିଆରେ ଭାରତୀୟ ସଂସ୍କୃତିର ବାହକ ରୂପେ ଉତ୍କଳ ଏକ ପ୍ରମୁଖ ଭୂମିକା ଗ୍ରହଣ କରିଥିଲା ।

ବୌଦ୍ଧ ଧର୍ମ ମହାବଂଶ ଅନୁସାରେ ଜଣାଯାଏ, ଉତ୍କଳର ବିଜୟ ସିଂହ ନାମକ ଜଣେ ରାଜପୁତ୍ର ଖୁବ୍ ଅବାଧ୍ୟ ଦୁଷ୍ଟ ଓ ପ୍ରଜାପୀଡ଼କ ଥିଲେ । ପ୍ରଜାମାନଙ୍କର ଅଭିଯୋଗକ୍ରମେ ରାଜା ତାଙ୍କୁ ଦେଶାନ୍ତରୀ କରିଥିଲେ । ଏକ ବୋଇତରେ ବିଭିନ୍ନ ବର୍ଗର ସାତଶହ ଲୋକଙ୍କୁ ଧରି ସେ ଦରିଆ ପାରି ଏକ ଦୀପରେ ଅବସ୍ଥାନ କରିଥିଲେ । ସେଠାରେ ନୂଆ ସଭ୍ୟତା ବସାଇଥିଲେ । ସେହି ଦ୍ୱୀପର ନାମ ସିଂହଳ ନାମରେ ନାମିତ ହେଲା । ବୌଦ୍ଧଗ୍ରନ୍ଥ ମହାବଂଶ ଅନୁସାରେ ବିଜୟ ସିଂହ ହେଉଛନ୍ତି କଳିଙ୍ଗ କନ୍ୟା ସୁମୀମାଙ୍କର ପୌତ୍ର । ଅଶୋକଙ୍କ ପୁତ୍ର ମହେନ୍ଦ୍ର ଓ ସଂଘମିତ୍ରା ବୌଦ୍ଧଧର୍ମ ପ୍ରଚାର ପ୍ରସାର ପାଇଁ ଉତ୍କଳର ତାମ୍ରଲିପ୍ତି ବନ୍ଦର ଦେଇ ସିଂହଳ ଯାଇଥିଲେ ।

ଇଣ୍ଡୋନେସିଆର ପ୍ରଥମ ସଭ୍ୟତା କଳିଙ୍ଗରୁ ଆସିଥିଲା ବୋଲି ଇଣ୍ଡୋନେସିଆର ଅଧିବାସୀ ଏହା ସ୍ୱୀକାର କରନ୍ତି । ଇଣ୍ଡୋନେସିଆର ବରୋବୁଦୁର ଯେଉଁ ବୌଦ୍ଧକୀର୍ତ୍ତି ରହିଛି ତାହାର କଳା ସ୍ଥାପତ୍ୟ ଓଡ଼ିଶାର ରତ୍ନଗିରିଠାରେ ଥିବା ବୌଦ୍ଧବିହାରମାନଙ୍କ ସହ ଅନେକ ସାମଞ୍ଜସ୍ୟ ରହିଛି । ଏକଦା କଳିଙ୍ଗ ଥିଲା ବୌଦ୍ଧ ଧର୍ମାବଲମ୍ବୀ ପାଇଁ ଏକ ତୀର୍ଥସ୍ଥଳ । ଗୌତମ ବୁଦ୍ଧତ୍ୱ ଲାଭ କଲାପରେ ପ୍ରଥମେ ଯେଉଁ ଦୁଇଜଣଙ୍କ ସମକ୍ଷରେ ତାଙ୍କ ଅନୁଭୂତି ବର୍ଣ୍ଣନା କରିଥିଲେ ଓ ତାଙ୍କୁ ଶିଷ୍ୟ ରୂପେ ଗ୍ରହଣ କରିଥିଲେ ସେମାନେ ଥିଲେ ଉତ୍କଳର ଦୁଇଜଣ ସାଧବ ତପସୁ ଓ ବଲ୍ଲୀକ । ସେମାନେ ସୁଦୂର ଓଡ଼ିଶାରୁ ବାଣିଜ୍ୟ କରିବା ପାଇଁ ଯାଇଥିଲେ । ବୁଦ୍ଧଦେବଙ୍କ ପୂର୍ବରୁ ଯେ ଉତ୍କଳର ସାଧବମାନେ ବୋଇତରେ ବାଣିଜ୍ୟ କରିବା ପାଇଁ ଦୂର ଦେଶମାନଙ୍କୁ ଯାଉଥିଲେ, ଏଥିରୁ ତାହା ପ୍ରମାଣିତ ହୁଏ ।

ଫିଲିପାଇନ୍ସରେ କଳିଙ୍ଗ ଆସାୟାଓ ନାମକ ଏକ ପ୍ରଦେଶ ରହିଛି । ସେହିପରି ବ୍ରହ୍ମଦେଶରେ ଶ୍ରୀକ୍ଷେତ୍ର ଓ କଳିଙ୍ଗ ବନ ବୋଲି ଦୁଇଟି ସ୍ଥାନ ରହିଛି । ଓଡ଼ିଶାର ଶୈଳୋଦ୍ଭବ ବଂଶର ଜଣେ ରାଜା ଶୈଳେନ୍ଦ୍ର ସୁମାତ୍ରାରେ ରାଜତ୍ୱ କରୁଥିଲେ ।

ଓଡ଼ିଶାର ପ୍ରାଚୀନ ନୌବାଣିଜ୍ୟ ଦକ୍ଷିଣ-ପୂର୍ବ ଏସିଆର ଦୀପମାନଙ୍କରେ ବସତି ଓ ସଭ୍ୟତାର ବିକାଶ ପାଇଁ ଏକ ପ୍ରମୁଖ ଭୂମିକା ଗ୍ରହଣ କରିଥିଲା । ଉତ୍କଳୀୟମାନେ ନୌବାଣିଜ୍ୟ ଓ ଜାହାଜ ନିର୍ମାଣ ପ୍ରକ୍ରିୟାରେ

ଅତ୍ୟନ୍ତ କୁଶଳୀ ଥିଲେ । ବୋଇତ ନେଇ ଦୂର ଦୂରାନ୍ତର ଯାଉଥିବାବେଳେ ବର୍ଷ ବର୍ଷ ଧରି ସେମାନେ ସେଠାରେ ରହୁଥିଲେ । ଏପରିକି ୧୦/୧୨ ବର୍ଷ ପରେ ସେମାନେ ଫେରିବାର ଦୃଷ୍ଟାନ୍ତ ପୁରୁଣା କଥାମାନଙ୍କରେ ରହିଛି । ସେମାନଙ୍କ ସହ ବାଣିଜ୍ୟିକ ଓ ଆବେଗଗତ ସମ୍ପର୍କ ସ୍ଥାପନ ହେଉଥିବ । ଫେରିବା ବେଳକୁ କେହି କେହି ସେଠାରେ ରହିଯାଉଥିବା ବେଳେ ଯେଉଁମାନେ ଫେରି ଆସନ୍ତି ସେମାନେ ମଧ କିଛି ପ୍ରତୀକ ସେଠାରେ ଛାଡ଼ି ଆସୁଥିବେ । ସେହି ଭାବରେ ଉତ୍କଳୀୟ ସଂସ୍କୃତି ପରମ୍ପରା ସହ ଜାଭା, ବୋର୍ଣ୍ଣିଓ, ସୁମାତ୍ରା, କୋଚିନ୍, କାମ୍ବୋଡ଼ି ଆଦି ସ୍ଥାନର ଅନେକ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ସେମାନଙ୍କ ନାମକରଣ ଖାଦ୍ୟ, ବସ୍ତ୍ର, ପର୍ବପର୍ବାଣି ସମ୍ପର୍କରେ ଅଧ୍ୟୟନ କରି ଗବେଷକମାନେ ଏହି ନିଷ୍କର୍ଷରେ ଉପନୀତ ହୋଇଛନ୍ତି କିନ୍ତୁ କାଳକ୍ରମେ ବହୁ ପ୍ରାକୃତିକ ବିପର୍ଯ୍ୟୟ, ସାମାଜିକ ଓ ରାଜନୈତିକ କାରଣରୁ ଓଡ଼ିଶାର ନୌବାଣିଜ୍ୟ ପରମ୍ପରା ଭୁଷୁଡ଼ିବାକୁ ଲାଗିଲା । ଉତ୍କଳୀୟମାନେ ଯେଉଁ ଦେଶମାନଙ୍କୁ ସୁନା, ରୁପା, ମଣିମାଣିକ୍ୟ ସହ ଅନ୍ୟାନ୍ୟ ବହୁ ମୂଲ୍ୟବାନ ସାମଗ୍ରୀର ବ୍ୟବସାୟ କରୁଥିଲେ, ବ୍ୟବସାୟରେ ସାଧୁତା ରକ୍ଷା କରୁଥିବା ହେତୁ ସାଧବ ନାମରେ କଥିତ ହେଉଥିଲେ ସେହି ବଂଶର ଉତ୍ତରଦାୟଦମାନେ ପେଟପାଟଣା ପାଇଁ ଦାଦନ ଖଟି ସେହି ଦେଶମାନଙ୍କୁ ଗଲେ । ଯେଉଁ ସମ୍ମାନଜନକ ସ୍ଥାନ ସେମାନେ ସେଠାରେ ଅର୍ଜନ କରିଥିଲେ, ତା'ର କାଣିଚାଏ ବି ଏହି ଦାଦନମାନେ କରିପାରିଲେ ନାହିଁ । ବରଂ ସେଠାରେ ସେମାନଙ୍କର ଦୟନୀୟ ସ୍ଥିତି, ବିକଳ ବିଧୁତ ନିର୍ଯ୍ୟାତନା, ଲାଞ୍ଛନା ଓ ଅପମାନର ଚିତ୍ର ଆମ ସମ୍ମୁଖକୁ ଆସୁଛି ।

ପ୍ରାଚୀନ ଉତ୍କଳ ସାଗର ଓ ବର୍ତ୍ତମାନ ବଙ୍ଗୋପସାଗର ନାମରେ ଖ୍ୟାତଲାଭ କରିଥିବା ସମୁଦ୍ର ଉପକୂଳବର୍ତ୍ତୀ ଅଞ୍ଚଳମାନଙ୍କରେ ଅନ୍ୟୂନ ୨୦ଟି ବନ୍ଦର ନୌବାଣିଜ୍ୟ କାଳରେ ସକ୍ରିୟ ଥିଲେ । ସେମାନଙ୍କ ମଧ୍ୟରୁ ଏବେ ଅଧିକାଂଶ ଇତିହାସର ଗର୍ଭରେ । ଇତିହାସ ହିଁ ସେହି ଗୌରବାବହ ଐତିହ୍ୟ ସମ୍ପର୍କରେ ଆମମାନଙ୍କ ପାଖରେ ସାକ୍ଷୀ ହୋଇ ରହିଛି ।

ଯେଉଁ ବନ୍ଦର ଦେଇ ଆମ ସାଧବମାନେ ଦୂରଦୂରାନ୍ତରକୁ ଯାଉଥିଲେ ସେମାନଙ୍କ ମଧ୍ୟରେ ଥିଲା ତାମ୍ରଲିପ୍ତି, ଚେଲିତୋଳ ପାଲୁର ପିଥୁଣ୍ଡ, ମନସୁର କୋଟା, ପିପିଲି, ବାଲେଶ୍ୱର, ମାଣିକପାଟଣା, ହରିହରପୁର, ଧାମରା, ଚାନ୍ଦବାଲି, ସୁବର୍ଣ୍ଣରେଖା, ପୁରୀ, ଗଞ୍ଜାମ, ସୋନପୁର, ବରୁହା ଓ କଳିଙ୍ଗପତନମ୍ ପ୍ରଧାନ । ଏହି ବନ୍ଦରମାନଙ୍କ ମଧ୍ୟରୁ ଅଧୁନା କେତୋଟି ସମ୍ପୂର୍ଣ୍ଣ ନିଶ୍ଚିହ୍ନ ହୋଇ ଯିବାବେଳେ ଆଉ କେତୋଟି ସେହି ପୂର୍ବ କୀର୍ତ୍ତି ସମୂହକୁ ଅନ୍ତର୍ଗର୍ଭିତ କରି ତଥାପି ଜୀବନ୍ତ ଅବସ୍ଥାରେ ଅଛି ।

୧. ତାମ୍ରଲିପ୍ତି – ତାମ୍ରଲିପ୍ତି ବନ୍ଦର ଉତ୍କଳୀୟ ନୌବାଣିଜ୍ୟ ପରମ୍ପରାର ଅନେକ ଗୌରବାବହ ସ୍ମୃତି ବହନ କରିଛି । ବର୍ତ୍ତମାନ ଏହା ପଶ୍ଚିମବଙ୍ଗର ମିଦିନାପୁର ଜିଲ୍ଲାରେ ଅବସ୍ଥିତ । ପୂର୍ବରୁ ଏହା କଳିଙ୍ଗ ଭୂଖଣ୍ଡରେ ଥିଲା । ଖ୍ରୀଷ୍ଟପୂର୍ବ ୩୦୦ରେ ଅଶୋକଙ୍କ ପୁତ୍ର ମହେନ୍ଦ୍ର ଓ ସଂଘମିତ୍ରା ଏହି ପଥଦେଇ ବୌଦ୍ଧଧର୍ମ ପ୍ରଚାର ପାଇଁ ସିଂହଳ ଯାତ୍ରା କରିଥିଲେ । ଚୀନ୍ ପରିବ୍ରାଜକ ଫାହିୟାନ୍ ଓ ହୁଏନ୍‌ସାଂ ମଧ ପଞ୍ଚମ ଓ ସପ୍ତମ ଶତାବ୍ଦୀ ବେଳକୁ ଏହି ପଥ ଦେଇ ସିଂହଳ ଯାଇଥିଲେ ଓ ସେଠାରୁ ଚୀନ୍ ଫେରିଯାଇଥିଲେ ।

୨. ଚେଲିତୋଳ ବନ୍ଦର ଜାହାଜ ଯାତ୍ରୀମାନଙ୍କ ପାଇଁ ବିଶ୍ରାମସ୍ଥଳୀ ଥିଲା । ଏହାର ଅବସ୍ଥିତି ନେଇ ଐତିହାସିକମାନଙ୍କ ମଧ୍ୟରେ ମତଭେଦ ପରିଲକ୍ଷିତ ହେଲେ ସୁଦ୍ଧା ଏହି ବନ୍ଦରଟି ଓଡ଼ିଶାରେ ଥିଲା । ତାମ୍ରଲିପ୍ତି ବନ୍ଦରର ପୂର୍ବ ନାମ ବୋଲି କୁହାଯିବା ବେଳେ ପୁରୀ କିମ୍ବା ମହାନଦୀର ଶାଖାନଦୀ ଚିତ୍ରୋତ୍ପଳା ନଦୀ ତୀରରେ ଥିଲା ବୋଲି କେହି କେହି କହନ୍ତି ।

୩. ପାଲୁର୍ – ପାଲୁର୍ ଅର୍ଥ ଦନ୍ତ । ପୂର୍ବରୁ ଏହାକୁ ଦନ୍ତପୁର ବୋଲି କୁହାଯାଉଥିଲା । ଗଞ୍ଜାମ ଜିଲ୍ଲା ଛତ୍ରପୁର ନିକଟରେ ଏହି ବନ୍ଦର ଥିଲା । ବର୍ତ୍ତମାନ ଏହା ସମ୍ପୂର୍ଣ୍ଣ ପୋତି ହୋଇ ପଡ଼ିଛି । ରୋମାନ୍ ଓ ଚୀନ୍ ଦେଶର କେତେକ ଐତିହାସିକ ସନ୍ଦର୍ଭମାନଙ୍କରେ ଏହି ନାମ ଉଲ୍ଲେଖ ରହିଛି ।

୪. ପିଥୁଣ୍ଡ – ବର୍ତ୍ତମାନ ଆନ୍ଧ୍ରପ୍ରଦେଶର ମୁଖଲିଙ୍ଗମ୍‌ଠାରେ ଅବସ୍ଥିତ । ଏକଦା ଜାଫନାର ଏକ ପ୍ରାଚୀନ ଅଭିଲେଖରେ ପିଥୁଣ୍ଡକୁ କଳିଙ୍ଗର ଏକ ସମୃଦ୍ଧଶାଳୀ ବନ୍ଦର ବୋଲି କୁହାଯାଇଛି । ହାତୀଗୁମ୍ଫାରେ ଖାରବେଳଙ୍କ ସମୟରେ ଲିଖିତ ଏକ ଶିଳାଲିପିରେ ମଧ୍ୟ ପିଥୁଣ୍ଡ କଳିଙ୍ଗ ନୌବାଣିଜ୍ୟର ପେଣ୍ଠସ୍ଥଳ ଥିଲା ବୋଲି ଲିପିବଦ୍ଧ ହୋଇଛି ।

୫. ପିପିଲି – ବାଲେଶ୍ୱର ଜିଲ୍ଲାରେ ଅବସ୍ଥିତ ବୁଢ଼ାବଳଙ୍ଗ ନଦୀ ତୀରରେ ଏହି ବନ୍ଦର ଥିଲା । ମୋଗଲମାନେ ଏହି ବନ୍ଦର ନିର୍ମାଣ କରିଥିଲେ । ୧୭ଶ ଶତାବ୍ଦୀ ବେଳକୁ ଏଠାରେ ପାଞ୍ଚଟି ୟୁରୋପିଆନ୍ ଜାତି ଏଠାରେ ଉପନିବେଶ ସ୍ଥାପନ କରିଥିଲେ । ସେମାନେ ହେଉଛନ୍ତି ଇଂଲିଶ୍, ଡଚ୍, ଫ୍ରେଞ୍ଚ, ପର୍ତ୍ତୁଗୀଜ୍ ଓ ଡେମସ୍ । ଏହି ବନ୍ଦରଟି ଅଧିକ ଗୁରୁତ୍ୱପୂର୍ଣ୍ଣ ଥିଲା, କାରଣ ଏଠାରୁ ପାଞ୍ଚ କିଲୋମିଟର ଦୂରରେ ଏକ ଜାହାଜ ନିର୍ମାଣ କାରଖାନା ଥିଲା । ବିଭିନ୍ନ ପ୍ରକାର ଜାହାଜ ଓ ବୋଇତ ଏଠାରେ ନିର୍ମାଣ ଓ ମରାମତି କରାଯାଉଥିଲା ।

ହରିହରପୁର ବନ୍ଦର କଟକ ଜିଲ୍ଲାର ମହାନଦୀ ମୁହାଣରେ ଅବସ୍ଥିତ ଥିଲା । ଇଂରେଜମାନେ ଏଠାରେ ୧୬୩୩ ଖ୍ରୀଷ୍ଟାବ୍ଦରେ ସେମାନଙ୍କ ପ୍ରଥମ କାରଖାନା ବସାଇଥିଲେ । ଛଅ ସାତ ମାଇଲ୍ ଆକାର ପରିମିତ ସ୍ଥାନରେ ଏଠାରେ ପ୍ରାୟ ଏକ ହଜାର ବୁଣାକାର ଓ ଅନେକ ବଣିକ ବସବାସ କରୁଥିଲେ ।

୮. ମାଣିକ ପାଟଣା – ଆକବରଙ୍କର ଜଣେ ସଭାସଦ୍ ଆବୁଲ୍ ଫାଜଲ୍ ତାଙ୍କ 'ଆଇନ୍–ଇ–ଆକବରୀ'ରେ ମାଣିକ ପାଟଣାକୁ ଚିଲିକାର ପାର୍ବତ୍ୟ ଅଞ୍ଚଳର ଏକ ବନ୍ଦର ରୂପେ ବର୍ଣ୍ଣନା କରିଛନ୍ତି ।

୯. ଅବିଭକ୍ତ ବାଲେଶ୍ୱର ଓ ବର୍ତ୍ତମାନର ଭଦ୍ରକ ଜିଲ୍ଲାର ଧାମରା ନଦୀ ମୁହାଣରେ ଏକ ବନ୍ଦର ଥିଲା । ୧୮୩୦ ଖ୍ରୀଷ୍ଟାବ୍ଦ ବେଳକୁ ଏହି ବନ୍ଦରର ରକ୍ଷଣାବେକ୍ଷଣା ଓ ପରିଚାଳନା କରିବା ପାଇଁ ଜଣେ ଅଧିକାରୀକୁ ଇଂରେଜମାନେ ନିଯୁକ୍ତି ଦେଇଥିଲେ । ୧୮୬୬ ମସିହାରେ ହୋଇଥିବା ନଅଙ୍କ ଦୁର୍ଭିକ୍ଷର ସମ୍ମୁଖୀନ ହେବା ପାଇଁ ଏହି ବନ୍ଦର ଦେଇ ବାହାରୁ ଚାଉଳ ଆମଦାନୀ ହୋଇଥିଲା ।

ଚାନ୍ଦବାଲି–ବୈତରଣୀ ନଦୀ ମୁହାଣ ଏହି ବନ୍ଦରଟି ଥିଲା । ଏହା ତତ୍‌କାଳୀନ କମିଶନ୍‌ର ରେଭେନ୍ସା ସାହେବଙ୍କ ନାମରେ ରେଭେନ୍ସା ବନ୍ଦର ମଧ୍ୟ କୁହାଯାଉଥିଲା । ଷ୍ଟିମର ଜାହାଜ ପ୍ରଚଳନ ହେବା ପରେ ଚାନ୍ଦବାଲି ବନ୍ଦର ଖୁବ୍ ଶୀଘ୍ର ସମୃଦ୍ଧ ହୋଇ ପଡ଼ିଲା । ୧୮୭୦ ମସିହା ବେଳକୁ ଏହି ବନ୍ଦର ବାଣିଜ୍ୟ ବ୍ୟବସାୟ ପାଇଁ ଯେତିକି ନୁହେଁ, ଯାତ୍ରୀବାହୀ ବୋଇତ ରୂପେ ବେଶି ପ୍ରସିଦ୍ଧି ଲାଭ କରିଥିଲା । ଭାରତ ଓ ଭାରତ ବାହାରେ ଅନେକ ସ୍ଥାନକୁ ଏଠାରୁ ଯୋଗାଯୋଗ ସହଜ ହୋଇଥିଲା । ଚାଉଳ, ଡାଲି ଜାତୀୟ ଶସ୍ୟ ଓ ଚୂଡ଼ା ଏଠାରୁ ବମ୍ବେ, କଛ ଓ କାଲିକଟ୍ ଆଦି ସ୍ଥାନରୁ ରପ୍ତାନି କରାଯାଇଥିଲା । ଏହି ବନ୍ଦର ସ୍ୱତନ୍ତ୍ର ଭାବେ କଷ୍ଟମ୍ ହାଉସ୍, ପୋଷ୍ଟ ଅଫିସ୍ ଓ ଟେଲିଗ୍ରାଫ୍ ଅଫିସ୍ ଆଦି ଥିଲା । ଏବେ ସୁଦ୍ଧା ଏହି ସ୍ମୃତିର ସ୍ମାରକୀ ରୂପେ ଭଙ୍ଗାତୁଟା ଜାହାଜ ଓ ତୋପ ଆଦି ଏଠାରେ ଦୃଶ୍ୟମାନ ହୁଏ ।

୧୧. ସୁବର୍ଣ୍ଣରେଖା – ସୁବର୍ଣ୍ଣରେଖା ବନ୍ଦର ବ୍ରାହ୍ମଣୀ ଓ ବୈତରଣୀ ନଦୀ ମୁହାଣରେ ଅବସ୍ଥିତ ଥିଲା । ଇଂରେଜମାନଙ୍କ ଦ୍ୱାରା ଏହା ୧୮୫୮ ଖ୍ରୀଷ୍ଟାବ୍ଦ ବେଳକୁ ବନ୍ଦରର ଏହା ମାନ୍ୟତା ପାଇଥିଲା । ୧୮୬୬ ନଅଙ୍କ ଦୁର୍ଭିକ୍ଷ ବେଳେ ଦୁର୍ଭିକ୍ଷ ପ୍ରପୀଡ଼ିତ ଜନତାଙ୍କୁ ରିଲିଫ୍ ବଣ୍ଟନ ପାଇଁ ବହୁତ ସହାୟକ ହୋଇଥିଲା ।

୧୩. ପୁରୀ ବନ୍ଦର ୧୮୬୦ରେ ନିର୍ମାଣ କରାଯାଇଥିଲା । ନଅଙ୍କ ଦୁର୍ଭିକ୍ଷବେଳେ ପୀଡ଼ିତଙ୍କ ପାଇଁ ସାହାଯ୍ୟ ପ୍ରେରଣ କରିବା ସମୟରେ ଏହା ଲୋକଲୋଚନକୁ ଆସିଥିଲା । ଏଠାରୁ ଚାଉଳ ଶ୍ରୀଲଙ୍କା ଓ ମାଳଦ୍ୱୀପମାନଙ୍କୁ ରପ୍ତାନି କରାଯାଉଥିଲା ।

ଗଞ୍ଜାମ ଜିଲ୍ଲାରେ ଗୋପାଳପୁର ବନ୍ଦର ଥିଲା । ଋଷିକୂଲ୍ୟା ନଦୀ ମୁହାଣରେ ଏହି ବନ୍ଦରକୁ ମନସୁରକୋଟା ବୋଲି ମଧ୍ୟ କୁହାଯାଉଥିଲା । ବର୍ମା ଓ ଦକ୍ଷିଣ–ପୂର୍ବ ଏସିଆର ଦୀପମାନଙ୍କ ସହ ବାଣିଜ୍ୟ ବ୍ୟବସାୟ ଚାଲିଥିଲା ।

ଏସବୁ ବ୍ୟତୀତ ବ୍ରହ୍ମପୁରର ଚଉଦ ମାଇଲ୍ ଦୂରରେ ବାହୁଦା ନଦୀ କୂଳରେ ଅବସ୍ଥିତ ସୁନାପୁର ବନ୍ଦର ଥିଲା । ବରୁଓ୍ୱା ବନ୍ଦର ନାଗାବଳୀ ନଦୀ ମୁହାଣରେ ଥିଲା । ବରହମ୍ପୁରଠାରୁ ୩୩ କିଲୋମିଟର ଦୂରରେ ଏହି ବନ୍ଦରରୁ ପ୍ରଚୁର ନଡ଼ିଆ ଓ ନଡ଼ିଆ ତେଲ ବାହାରକୁ ଯାଉଥିଲା । ବ୍ୟବସାୟ ବାଣିଜ୍ୟ ସହ ଏହା ଯାତ୍ରୀମାନଙ୍କୁ ବର୍ମା, ରେଙ୍ଗୁନ୍ ଆଦି ସ୍ଥାନକୁ ନେବା ଆଣିବାରେ ସହାୟକ ହେଉଥିଲା । ମହେନ୍ଦ୍ର ତନୟା କୂଳରେ ଅବସ୍ଥିତ ପୁଣ୍ଡି ଏକ କ୍ଷୁଦ୍ର ବନ୍ଦର ଥିଲା । ଏସବୁ ବନ୍ଦରମାନ ଓଡ଼ିଶାର ନୌବାଣିଜ୍ୟର ଐତିହ୍ୟ ଇତିହାସର ମୂକସାକ୍ଷୀ ।

ବୋଇତ ବା ଜାହାଜରେ ସାଧବମାନେ କଳିଙ୍ଗରୁ ବିଭିନ୍ନ ସାମଗ୍ରୀ ନେଇ ଦକ୍ଷିଣ ପୂର୍ବ ଏସିଆର ସିଆମ୍, ଥାଇଲାଣ୍ଡ, କାମ୍ବୋଡ଼ିଆ, ଚମ୍ପା ଓ ଇଣ୍ଡୋନେସିଆ ଆଦି ସହ ମଧ୍ୟ ବାଣିଜ୍ୟ ଓ ସାଂସ୍କୃତିକ ସମ୍ପର୍କ ରଖିଥିଲେ ।

ଓଡ଼ିଶାରୁ ମସଲା, ମୂଲ୍ୟବାନ୍ ପଥର, ହୀରା, ଆସବାବପତ୍ର, ହାତୀଦାନ୍ତ, ହାତୀ, ନଡ଼ିଆ, ଆୟୁର୍ବେଦିକ ଔଷଧପତ୍ର, ବସ୍ତ୍ର ଆଦି ରପ୍ତାନି କରାଯାଉଥିବା ବେଳେ ଯେଉଁ ଦ୍ୱୀପମାନଙ୍କରେ ଯାହା ମିଳୁଥିଲା, ସେମାନେ ଧରି ଆସୁଥିଲେ । ଏଠାରୁ ଯାତ୍ରା କଲାବେଳେ ଯେମିତି ବୋଇତ ବୋଝେଇ କରି ନେଉଥିଲେ, ଫେରିଲାବେଳେ ବି ସେହିପରି ବୋଇତ ବୋଝେଇ କରି ଫେରୁଥିଲେ । ଜଗନ୍ନାଥଙ୍କ ମସ୍ତକରେ ଏକ ମୂଲ୍ୟବାନ ମଣି ଅଛି । ଯେଉଁ ମଣି ସମ୍ପର୍କରେ କିମ୍ବଦନ୍ତୀ କହେ, କଳିଙ୍ଗର ଜଣେ ସାଧବ ବେପାର ବଣିଜ ଧରି ସ୍ୱଦେଶ ବାହୁଡୁଥିବା ବେଳେ ଗୋଟିଏ ଦୀପରେ କିଛି ସମୟ ଅନୁଚରମାନଙ୍କ ସହ ବିଶ୍ରାମ ନେଉଥିଲେ । ହଠାତ୍ ତାଙ୍କ ଦୃଷ୍ଟିରେ ଏକ ଉଜ୍ଜ୍ୱଳ ମଣିଟିଏ ପଡ଼ିଲା । ଯେଉଁ ମଣିଟିକୁ ଏକ ବିରାଟକାୟ ସର୍ପ ମୁଣ୍ଡରୁ ବାହାର କରି ସେଠାରେ ଥୋଇ ତା'ର ଖାଦ୍ୟ ଅନ୍ୱେଷଣରେ ଯାଇଥିଲା । ସେହି ମଣିଟିକୁ ଧରି ସାଧବ ଜଣକ ଖୁବ୍ ଶୀଘ୍ର ବୋଇତରେ ବାହାରି ଆସିଲେ । ବୋଇତ କିଛି ବାଟ ଯାଇଛି କି ନାହିଁ, ସେହି ବିରାଟକାୟ ସର୍ପ ଫଣା ମେଲାଇ ବୋଇତ ପଛେ ପଛେ ଧାଇଁଲା । ସମୁଦ୍ର ପଥରେ ଖୁବ୍ ବେଳଯାଏ ବୋଇତକୁ ସର୍ପ କବଳରୁ ରକ୍ଷା କରିବା ପାଇଁ ସଂଗ୍ରାମ କରିବା ପରେ ହତୋତ୍ସାହିତ ହୋଇ ଶେଷରେ ସାଧବ ଜଣକ ସ୍ୱଦେଶରେ ପହଞ୍ଚିବା ପରେ ମଣିଟିକୁ ଜଗନ୍ନାଥଙ୍କୁ ସମର୍ପଣ କରିଦେବେ ବୋଲି ମାନସିକ କରି ତାଙ୍କ ପାଖରେ ଶରଣ ପଶିଲେ । ଏହାପରେ ହଠାତ୍ ସର୍ପଟି ମୁହଁ ଫେରାଇ ନିଜ ରାସ୍ତାରେ ଚାଲିଗଲା । ଉତ୍କଳରେ ପହଞ୍ଚି ସାଧବଙ୍କର ପ୍ରଥମ କର୍ତ୍ତବ୍ୟ ଥିଲା ମଣିଟିକୁ ଶ୍ରୀଜଗନ୍ନାଥଙ୍କ ପାଦତଳେ ସମର୍ପି ଦେବା ।

ଓଡ଼ିଶାରେ ବୋଇତ ଓ ନୌବାଣିଜ୍ୟକୁ ନେଇ ଅସଂଖ୍ୟ କାହାଣୀ ଓ କିମ୍ବଦନ୍ତୀ ଅଛି । ଦିନ ଥିଲା ଯାହାର ଯେତେଖଣ୍ଡ ବୋଇତ ଅଛି ତାହାର ସେହି ପରିମାଣରେ ସମାଜରେ ମର୍ଯ୍ୟାଦା ଥିଲା । କେନ୍ଦ୍ରାପଡ଼ା ବଡ଼ କୋଠାରେ ଜଣେ ଧନୀକ ଥିଲେ, ଯାହାର ପଚାଶଖଣ୍ଡ ବୋଇତ ଥିଲା ବୋଲି କୁହାଯାଏ । ଖୁଦୁରୁକୁଣୀ ଓଷା ଅନୁସାରେ ତଅପୋଇର ପିତାଙ୍କର ଥିଲା ସାତଖଣ୍ଡ ବୋଇତ । ଖୁଲଣା ସୁନ୍ଦରୀ, ସତ୍ୟପୀର, ଶନିଶ୍ଚର ମେଳା, ଚଇତି ପୁନେଇଁ, ସାହାଡ଼ା ସୁନ୍ଦରୀ, ବୋଲେ ହୁଁଟି ଆଦି ବିଭିନ୍ନ ଗଳ୍ପ ଓଷାବ୍ରତ ଆଦିରେ ଆମ ପ୍ରାଚୀନ ସମୃଦ୍ଧ ନୌବାଣିଜ୍ୟ ପରମ୍ପରା ସମ୍ପର୍କରେ ବର୍ଣ୍ଣିତ ଅଛି । ଏହାଛଡ଼ା ବିଭିନ୍ନ କାବ୍ୟ–କବିତାରେ ଓଡ଼ିଶାର ସମୃଦ୍ଧ ନୌବାଣିଜ୍ୟ ସମ୍ପର୍କରେ ଦୃଷ୍ଟାନ୍ତ ରହିଛି । ସାରଳା ଦାସଙ୍କ ମହାଭାରତ, ନରସିଂହ ସେଣଙ୍କ ପରିମଳ କାବ୍ୟ, ଟୀକା ଗୋବିନ୍ଦ ଚନ୍ଦ୍ର, କୈବର୍ତ୍ତ ଗୀତା, ଲାବଣ୍ୟବତୀ ଆଦି କାବ୍ୟମାନଙ୍କରେ ନୌବାଣିଜ୍ୟର ଚିତ୍ର ବର୍ଣ୍ଣିତ ହୋଇଛି । ଲାବଣ୍ୟବତୀ କାବ୍ୟରେ ଉପେନ୍ଦ୍ରଭଞ୍ଜ ଲିଖିତ ଏକ ପଂକ୍ତି 'ବହିତ୍ର ଲାଗିଲା ଯାଇ ସିଂହଳ ଦୀପରେ' । ଓଡ଼ିଆଙ୍କ ମୁହେଁ ମୁହେଁ ବେଳ ଅବେଳରେ ଉଚ୍ଚାରିତ ହେଉଥାଏ । 'ବହିତ୍ର' ନାମରେ ଏକ ଓଡ଼ିଆ ପତ୍ରିକା ବ୍ରହ୍ମପୁରରୁ ବହୁଦିନ ଧରି ପ୍ରଚଳିତ ହୋଇ ଆସୁଥିଲା ।

ବୋଇତ ଯେତେବେଳେ ଦୂରଦୂରାନ୍ତରକୁ ଯାଉଥିଲା ସେତେବେଳେ ସେମାନେ ଜ୍ୟୋତିଷଙ୍କୁ ସାଙ୍ଗରେ ଧରି ଯାଉଥିଲେ । ସେମାନେ ମଝି ସମୁଦ୍ରରେ ନାବିକମାନଙ୍କୁ

ମାର୍ଗଦର୍ଶନ କରୁଥିଲେ । ଆକାଶର ତାରାମାନଙ୍କର ସ୍ଥିତି, ପାଞ୍ଜି ଅନୁସାରେ ଦିନ, ବାର, ଲଗ୍ନ ସହ ପାଣିପାଗର ଭବିଷ୍ୟତ ବାଣୀ କରୁଥିଲେ ଓ ଉପକୂଳମାନଙ୍କର ଭୌଗୋଳିକ ସ୍ଥିତି, ଗାଁଗଣ୍ଡା, ସହର, ମନ୍ଦିର, ପାହାଡ଼, ପର୍ବତ ଆଦି ସମ୍ପର୍କରେ ସୂଚନା ଦେଉଥିଲେ ।

ବୋଇତ ଅନୁକୂଳ କରିବା ବେଳେ ବୋଇତକୁ ସାଧବାଣୀମାନେ ବନ୍ଦାପନା କରିବା ସହ ମଙ୍ଗଳା ଠାକୁରାଣୀଙ୍କୁ ପୂଜା କରୁଥିଲେ । ସେହି ହେତୁ ପ୍ରତ୍ୟେକ ମୁହାଣ ମୁହଁ ବା ମନ୍ଦିର ନିକଟରେ ମଙ୍ଗଳା ସେହି ମଙ୍ଗଳାଙ୍କ ପୀଠମାନ ରହିଛି । ଚର୍ଚ୍ଚିକା, ମଙ୍ଗଳା, ରାମଚଣ୍ଡୀ, ଭଗବତୀ, ସମଲେଶ୍ୱରୀ, ହରଚଣ୍ଡୀ, ଗଡ଼ଚଣ୍ଡୀ ଆଦି ଏମାନଙ୍କ ମଧ୍ୟରୁ ଅନ୍ତର୍ଭୁକ୍ତ । ଖୁଲଣା ସୁନ୍ଦରୀ କାବ୍ୟରେ ରାଜା ବୋଇତ ଅନୁକୂଳ କରିଯିବା ବେଳେ ମଙ୍ଗଳାଙ୍କୁ ପୂଜା କରି ନଥିବାରୁ ଖୁବ୍ ଦୁର୍ଦ୍ଦଶା ଭୋଗିଥିଲେ । ପରେ ସେହି ମଙ୍ଗଳା ମାଆଙ୍କ ଦୟାରୁ ସବୁ ବିପତ୍ତିରୁ ରକ୍ଷା ପାଇଥିଲେ ।

ସାଧବମାନେ ମଙ୍ଗଳାଙ୍କୁ ପୂଜୁଥିବା ବେଳେ ନଦୀ ଓ ନାଆକୁ ଜୀବିକା କରି ବଞ୍ଚୁଥିବା କୈବର୍ତ୍ତମାନେ କିନ୍ତୁ ଲୋକ ଦେବୀମା'ଙ୍କୁ ପୂଜା କରୁଥିଲେ । ସେମାନଙ୍କ ମଧ୍ୟରେ ଗଡ଼ ନାୟକାଣୀ, ଧାମୁରାଇ, ବାସୁଳେଇ, ଜାଗୁଳେଇ, କନ୍ଧୁଣୀ, ଗଙ୍ଗେଇଶୁଣୀ କାଳିଜାଇ ପରି ପ୍ରାଚୀନଦୀର କୂଳେ କୂଳେ ଅନେକ ଲୋକଦେବୀ ଅଛନ୍ତି । ଯେଉଁମାନେ ନାବିକମାନଙ୍କୁ ସାହାଭରସା ହୁଅନ୍ତି ।

ଯେଉଁ ଅଞ୍ଚଳମାନଙ୍କରେ ବୋଇତ ବା ଜାହାଜ ତିଆରି ମରାମତି ଆଦି କାର୍ଯ୍ୟ ହେଉଥିଲା, ସେ ଅଞ୍ଚଳରେ ଏବେ ସୁଦ୍ଧା ସେହି ଗରିମାମୟ ସ୍ମୃତିକୁ ନାଁ ମାଧ୍ୟମରେ ପରିଚିତ ହେଉଛି ।

ବୋଇତ ଭଙ୍ଗାତୁଠ, ଜାହାଜକୁଦ, ଭଙ୍ଗାତୁଠ ଇତ୍ୟାଦି । ସେହି ପ୍ରାଚୀନ କାଳରୁ ଯେପରିକି ବୋଇତ କୁଦ, ଜାହାନିଆ ବୋଇତ ଏସବୁ ସ୍ଥାନର ନାମ ସେମିତି ରହିଆସିଛି । ବର୍ମାରେ ଶ୍ରୀକ୍ଷେତ୍ର ଓ କଳିଙ୍ଗ ବନ, ବାଲିଦୀପରେ ମହେନ୍ଦ୍ରତନୟା, ମହେନ୍ଦ୍ର ପର୍ବତ, ଇଣ୍ଡୋନେସିଆରେ ଥିବା କେତୋଟି ଦୀପର ନାମ କ୍ଲାଙ୍ଗ୍, କେଲିଙ୍ଗ୍ କନ୍ ଲନ୍ ଆଦି ସେମିତି ରହି ଆସିଛି । କଳିଙ୍ଗରେ ବୋଇତ ଭଙ୍ଗାତୁଠ ସୃଷ୍ଟି ବୋଲି ଗବେଷକମାନେ ଅନୁମାନ କରନ୍ତି ।

ଆମ ନୌବାଣିଜ୍ୟ ସହ ଘନିଷ୍ଠ ସମ୍ପର୍କ ରଖିଥିବା କେତେ ସାଙ୍ଗିଆ ମଧ୍ୟ ସେହି ଅମର କୀର୍ତ୍ତିକୁ ଧାରଣ କରି ରଖିଛି । ମଙ୍ଗରାଜ ଅର୍ଥାତ୍ ବୋଇତର ମଙ୍ଗ ଦାୟିତ୍ୱରେ ଥାଆନ୍ତି । କେଉଁ ଦିଗକୁ କେତେ ମଙ୍ଗ ପରିବର୍ତ୍ତନ କଲେ ବୋଇତ ବା ଜାହାଜଟି ଠିକଣା ଯାଗାରେ ନିରାପଦରେ ପହଞ୍ଚିବ, ତାହା ତାଙ୍କ ଦାୟିତ୍ୱରେ ଥାଏ । ନାବିକ ଅପଭ୍ରଂଶ ହୋଇ ନାୟକ ହୋଇଥାଇ ପାରନ୍ତି ବୋଲି କେହି କେହି ମତ ଦିଅନ୍ତି । ସେହିପରି ମହାନାୟକ ବା କ୍ୟାପ୍ଟେନ୍ ପଦବୀଗୁଡ଼ିକ ମଧ୍ୟ ଏହି ନୌବାଣିଜ୍ୟ ଯୁଗରୁ ରହିଆସିଛି । ଏହାଛଡ଼ା ସିଧାସଳଖ ବୋଇତାଇ, ବୋଇତିଆଳ, କାଣ୍ଡାର, ମାଝୀ, ଜାଲି, ଦଳେଇ, ତରେଇ, ପାଲିଆ ଆଦି ସଂଜ୍ଞା ଆଜି ସୁଦ୍ଧା ସେମିତି ଅତୁଟ ହୋଇ ରହିଛି । ତେଲିଗୁଡ଼ିଆ ଆଦି କେତେ ସମ୍ପ୍ରଦାୟଙ୍କର ସାହୁ ସଂଜ୍ଞା ସାଧବ ବା ସାଧୁରୁ ସାହୁକୁ ଆସିଛି ବୋଲି ସେମାନେ କହନ୍ତି ।

ଆମର ଅଦ୍ୟାବଧି କେତେକ ଖାଦ୍ୟଦ୍ରବ୍ୟ ନୌବାଣିଜ୍ୟ ବେଳେ ବାହାରୁ ଆସିଥିବା ପରି ମନେହୁଏ । ଯବଧାନ ବା ଯଅ ଜାଭାରୁ ଆସିଥାଇପାରେ ବୋଲି ଗବେଷକମାନେ କହନ୍ତି । ପଥିରୂପେ ବ୍ୟବହାର କରାଯାଉଥିବା ବାର୍ଲି ଶସ୍ୟ ବାଲି ଦୀପରୁ ଅଣାଯାଇଥାଇପାରେ । ଏହାଛଡ଼ା ଲଙ୍କା ମରିଚ, ଲଙ୍କା ଆମ୍ବ, ଲଙ୍କାରୁ ଆସିଥାଇପାରେ । ବୋଇତି କଖାରୁକୁ ମଧ୍ୟ ସେହି ନୌବାଣିଜ୍ୟ ସହ ଜଡ଼ିତ ବୋଲି କୁହାଯାଏ ।

ମହାନଦୀର ବାଲିରେ ଯାତ୍ରା ହେଉଥିବାରୁ ଏହାସବୁ ବାଲିଯାତ୍ରା କୁହାଯାଉଥିବା କଥା ଯୁକ୍ତି ଛଳରେ ଗବେଷକମାନେ କହନ୍ତି । ଅବିଭକ୍ତ କୋରାପୁଟ ଜିଲ୍ଲାର ବାଲିଯାତ୍ରା ନଦୀବାଲିରୁ ବାଲି ଆଣି ବାଲି ଘରେ ରଖି ପୂଜା କରାଯାଏ । ଏଥିସହ ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମ ମଧ୍ୟ ହୋଇଥାଏ । ହାଟ ବଜାର ବସେ ।

ମାସ ବ୍ୟାପୀ ଏହି ପୂଜାକୁ ସମ୍ପୂର୍ଣ୍ଣ ଧାର୍ମିକ ପର୍ବଟିଏ ଦୃଷ୍ଟିରୁ ବିଚାର କରାଯାଏ । ନୌବାଣିଜ୍ୟ ସହ ଏହି ପୂଜାର କୌଣସି ସମ୍ପର୍କ ନାହିଁ । କୋରାପୁଟ ଜିଲ୍ଲାର ନଦୀଗୁଡ଼ିକ ଖରସ୍ରୋତା । ଜଳପଥ ଦେଇ ଯାତାୟାତ ଏ ଅଞ୍ଚଳରେ ସମ୍ଭବ ନୁହେଁ । ଏହି ଗଣପର୍ବରେ ଆବାଳ-ବୃଦ୍ଧ-ବନିତା ସାମିଲ ହୋଇଥାନ୍ତି । ଏହି ଯାତ୍ରାରେ ବେପାର ବଣିଜ ମୁଖ୍ୟ ନୁହେଁ । ଏହି ପର୍ବଟି ମନୋରଞ୍ଜନଧର୍ମୀ ଓ କୃଷି ଆଧାରିତ । ଏହି ଦୃଷ୍ଟିରୁ କଟକର ବାଲିଯାତ୍ରାକୁ ବିଚାର କଲେ ଏହି ଯାତ୍ରା ସମ୍ପୂର୍ଣ୍ଣ ବାଣିଜ୍ୟ ବ୍ୟବସାୟ ଉପରେ ଆଧାରିତ । ସୂତାଠାରୁ ମୁକ୍ତା ପର୍ଯ୍ୟନ୍ତ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ଆସିଥାଏ । ଏବେ ତ ବିଲ୍ଡରମାନେ ଜମି, ଘର, ବାଡ଼ି, ଫ୍ଲାଟ୍ ଆଦି ବିକାକିଣା ପାଇଁ ଏହି ବାଲିଯାତ୍ରାକୁ ମୁଖ୍ୟ ମାଧ୍ୟମ କଲେଣି । ବାଲିଯାତ୍ରା କାର୍ତ୍ତିକ ପୂର୍ଣ୍ଣମୀର ବୋଇତ ବନ୍ଦାଣ ଉତ୍ସବ ସହ ଜଡ଼ିତ ହୋଇଥିବାରୁ ଏହା ନିଶ୍ଚିତ ରୂପେ କେଉଁଠି ନା କେଉଁଠି ନୌବାଣିଜ୍ୟ ଆଧାରିତ, ଏହା ଅସ୍ୱୀକାର କରାଯାଇ ନପାରେ । ବାଣିଜ୍ୟେ ବସତି ଲକ୍ଷ୍ମୀ । ଆମ ରାଜ୍ୟ ପ୍ରାଚୀନ କାଳରେ ଅତି ସମୃଦ୍ଧିଶାଳୀ ରାଜ୍ୟ ଥିବା ମୂଳରେ ନୌବାଣିଜ୍ୟର ଯଥେଷ୍ଟ ଅବଦାନ ଥିଲା । ଏହି ବ୍ୟବସାୟୀମାନେ ସାଧୁ ଥିବାରୁ ସେମାନଙ୍କୁ ସାଧୁ ବା ସାଧବ ବୋଲି କୁହାଯାଉଥିଲା । ବୁଦ୍ଧଦେବ ସିଦ୍ଧିପ୍ରାପ୍ତ ପରେ ଯେଉଁ ଦୁଇ ଜଣଙ୍କ ନିକଟରେ ନିଜ ଅନୁଭୂତି ବର୍ଣ୍ଣନା କରିଥିଲେ ସେମାନେ ଉତ୍କଳର ସାଧବ ଥିଲେ । ବାହାର ଦେଶମାନଙ୍କରେ ଏହି ବଣିକମାନଙ୍କୁ ଖୁବ୍ ମର୍ଯ୍ୟାଦା ମିଳୁଥିଲା, କିନ୍ତୁ କାଳକ୍ରମେ ସେ ଗୌରବମୟ ପରମ୍ପରା ଅନ୍ତ ହୋଇଗଲା । ନାନା ସାମାଜିକ, ରାଜନୈତିକ, ପ୍ରାକୃତିକ ବିପର୍ଯ୍ୟୟ ହେତୁ ଓଡ଼ିଶାର ଆର୍ଥିକ ମେରୁଦଣ୍ଡ ଭୁଷୁଡ଼ି ପଡ଼ିଲା । ମୁସଲ୍‌ମାନ, ମରହଟ୍ଟା ଓ ଇଂରେଜ ପ୍ରତିବେଶୀମାନଙ୍କ ଚକ୍ରାନ୍ତ ହେତୁ ଓଡ଼ିଶା ତା'ର ପୂର୍ବ ଐତିହ୍ୟ ହରାଇ ବସିଲା । ସେ ସାଧବରୁ ଦାଦନ ହୋଇଗଲା । ଦୂର ଦେଶମାନଙ୍କରେ ତା'ର ଯେଉଁ ମାନ ସମ୍ମାନ ଥିଲା, ତାହା ନିଜ ମାଟିରେ ସୁଦ୍ଧା ମିଳିଲା ନାହିଁ । ଇଂରେଜମାନେ ରାଜକାର୍ଯ୍ୟ ପାଇଁ ପ୍ରତିବେଶୀ ରାଜ୍ୟରୁ କର୍ମଚାରୀମାନଙ୍କୁ ଆଣିଲେ । ଓଡ଼ିଆମାନେ ଅବିଶ୍ୱାସୀ, ଦୁର୍ଦ୍ଦାନ୍ତ ବୋଲି ମରହଟ୍ଟାମାନେ ଇଂରେଜମାନଙ୍କୁ କହିଦେଇ ଗଲେ । ତେଣୁ ଇଂରେଜମାନେ ବହୁଦିନ ପର୍ଯ୍ୟନ୍ତ ଓଡ଼ିଆମାନଙ୍କ ଉପରେ ଭରସା କଲେ ନାହିଁ । ଓଡ଼ିଆମାନେ ମଧ୍ୟ ଇଂରେଜମାନଙ୍କୁ ସହଜରେ ଗ୍ରହଣ କରିପାରିଲେ ନାହିଁ । ପ୍ରତିବେଶୀ ଜମିଦାରମାନଙ୍କ ଦ୍ୱାରା ଜୁଲମର ଶିକାର ହୋଇ ପେଟପାଟଣା ପାଇଁ ରେଙ୍ଗୁନ୍ କାଳିମାଟି ଆସାମ ବର୍ମା ଆଦି ଦେଶକୁ ସୁଅ ଛୁଟିଲେ । ବେପାର ବାଣିଜ୍ୟ ପାଇଁ ନୁହେଁ, କୁଲି ମଜୁରି ପାଇଁ, ସେହି ଯେଉଁ ନୂଆଧାରା ଗଢ଼ି ଆସିଥିଲା ଏ ପର୍ଯ୍ୟନ୍ତ ସୁଦ୍ଧା ତା'ର ଅନ୍ତ ହୋଇନାହିଁ । କରୋନା କାଳରେ ୧୮ ଲକ୍ଷ ଦାଦନ ଓଡ଼ିଶା ବାହାରେ ଖଟୁଛନ୍ତି ବୋଲି ଜଣା ପଡ଼ିଲା । ଏବେ ଉଚ୍ଚଶିକ୍ଷା ଦୀକ୍ଷା ଓ ବୈଷୟିକ ଜ୍ଞାନକୌଶଳ ଅର୍ଜନ କରିଥିବା ଯୁବକ ଯୁବତୀଙ୍କ ପାଇଁ ୟୁରୋପ, ଆମେରିକା ଆଦି ହୋଇଛି ମୁଖ୍ୟ ଆକର୍ଷଣ । ବହୁରାଷ୍ଟ୍ରୀୟ କମ୍ପାନିମାନଙ୍କୁ ନିଜ ଜ୍ଞାନକୌଶଳ ବିନିମୟରେ କେବଳ ପାରିଶ୍ରମିକରେ ହିଁ ସେମାନେ ସନ୍ତୁଷ୍ଟ ରହୁଛନ୍ତି । ସେହି ରାଷ୍ଟ୍ରମାନଙ୍କର ଉତ୍ତରୋତ୍ତର ଉନ୍ନତି ହେବାବେଳକୁ ଆମ ଦେଶର ଶ୍ରମଦାନ କରୁଥିବା ମଣିଷମାନଙ୍କ ସଂଖ୍ୟା ବୃଦ୍ଧି ହେଉଛି । ଏମାନଙ୍କର ଜ୍ଞାନକୌଶଳ ନିଜ ଦେଶ ସମୃଦ୍ଧ ହେବା ଦିଗରେ ନିୟୋଜିତ ହୋଇପାରୁ ନାହିଁ । ଗ୍ରେଟ୍ ବ୍ରିଟେନ୍‌ରେ ଯେତେ ଡାକ୍ତର ଅଛନ୍ତି ସେମାନଙ୍କ ମଧ୍ୟରେ ଓଡ଼ିଶାର ଡାକ୍ତରଙ୍କ ସଂଖ୍ୟା ବେଶି । ଆମେରିକାରେ ଥିବା ଇଞ୍ଜିନିୟରଙ୍କ ମଧ୍ୟରେ ଅନେକ ଓଡ଼ିଆ ଇଞ୍ଜିନିୟର । ଉପସାଗରୀୟ କ୍ଷେତ୍ରମାନଙ୍କର ଓଡ଼ିଶାର ଅନେକ ଲୋକ କୁଲିକାମ କରୁଛନ୍ତି । କ୍ଷୋଭର ବିଷୟ, ଯେଉଁ ଉପକୂଳବର୍ତ୍ତୀ ଅଞ୍ଚଳରୁ ବଣିକ ଭାବରେ ଯାଉଥିଲେ ସେ ଅଞ୍ଚଳକୁ ପାଣି ପାଇପ୍ କାମ କରିବା ପାଇଁ ବିଭିନ୍ନ ବୈଦେଶିକ ରାଷ୍ଟ୍ରକମାନଙ୍କରେ ପଡ଼ି ରହିଛନ୍ତି । ଏହି ଧାରା ପରିବର୍ତ୍ତନ ହେବା ଦରକାର । ଆମର ପୂର୍ବ ଐତିହ୍ୟ ଓ ପରମ୍ପରାକୁ ଫେରାଇ ଆଣିବାକୁ ହେବ । ଯୁବ ସମାଜକୁ ନିଜ ମାଟିକୁ ଭଲପାଇବା ଶିଖାଇବାକୁ ପଡ଼ିବ ।

ଦି ଏମେରାଲ୍ଡ ଆପାର୍ଟମେଣ୍ଟ
ବ୍ଲକ୍ ସି, ୨୧୩, ଲକ୍ଷ୍ମୀସାଗର, ଭୁବନେଶ୍ୱର-୬

# ଐତିହାସିକ ବାଲିଯାତ୍ରା ଓ ପ୍ରାଚୀନ ନୌବାଣିଜ୍ୟ ପରମ୍ପରା

ପବିତ୍ର ମୋହନ ବାରିକ

କଳିଙ୍ଗର ପ୍ରାଚୀନ ନୌବାଣିଜ୍ୟ ପରମ୍ପରା ଓଡିଆ ଜାତିର ଗୌରବମୟ ଇତିହାସ ଓ ଐତିହ୍ୟର ଅଭୁଲା ସ୍ମୃତି । ତତ୍‌କାଳୀନ ଦୁଃସାହସିକ ଦରିଆପାରି ନୌବାଣିଜ୍ୟ ଆମ ଜାତିର ପରିଚୟ ସ୍ୱାଭିମାନ ଓ ଶକ୍ତିର ପ୍ରତୀକ । ଦକ୍ଷିଣ – ପୂର୍ବ ଏସିଆର ଦେଶମାନଙ୍କ ସହିତ ପ୍ରାଚୀନ କଳିଙ୍ଗରେ ନୌ ବାଣିଜ୍ୟ ସଂପର୍କ ଆମ ପାଇଁ ଗର୍ବ ଓ ଗୌରବର ବିଷୟ । ଏହା ଥିଲା ଯୁଗାନ୍ତକାରୀ ଓ ସୁଦୂର ପ୍ରସାରୀ । ଏହା ପ୍ରଭାବିତ କରିଥିଲା ଏବଂ ବର୍ତ୍ତମାନ ମଧ୍ୟ ଆନ୍ଦୋଳିତ କରୁଛି ଆମ ସାମାଜିକ, ସାଂସ୍କୃତିକ, ରାଜନୈତିକ ଓ ଧାର୍ମିକ ବ୍ୟବସ୍ଥାକୁ । ଏହି ସମୁଜ୍ଜ୍ୱଳ ସ୍ମୃତି ର ସ୍ମାରକୀ ଖୁଦୁରୁକୁଣୀ ଓଷା ଓ ପୁସ୍ତକ ନୌବାଣିଜ୍ୟକୁ କରେ ସମୃଦ୍ଧ । ଭୀମା ଧୀବରଙ୍କ ରଚିତ 'ଖୁଲଣା ସୁନ୍ଦରୀ' ପୁସ୍ତକ, ଏ କ୍ଷେତ୍ରରେ ଏକ ସ୍ମରଣୀୟ ଅଧ୍ୟାୟ କବି ସମ୍ରାଟ୍ ଉପେନ୍ଦ୍ର ଭଞ୍ଜ ଓ ଓଡିଆ ସାହିତ୍ୟର ରଥି ମହାରଥିମାନେ ସେମାନଙ୍କର କାବ୍ୟ, କବିତା, ଗଳ୍ପ, ଉପନ୍ୟାସ, ନାଟକ ଓ ପ୍ରବନ୍ଧମାନଙ୍କରେ ନୌବାଣିଜ୍ୟର ଛବି ସୁନ୍ଦର ଭାବରେ ଅଙ୍କିତ କରିଛନ୍ତି । ଡଃ ମାୟାଧର ମାନସିଂହଙ୍କର 'ମହାନଦୀରେ ଜ୍ୟୋସ୍ନା ବିହାର' ଏ ଦିଗରେ ଏକ ମାଇଲ ଖୁଣ୍ଟ । କାର୍ତ୍ତିକ ପୂର୍ଣ୍ଣିମାରେ ବୋଇତ ବନ୍ଦାଣ ଉତ୍ସବ ଆମ ସମୃଦ୍ଧ ନୌବାଣିଜ୍ୟ ପରମ୍ପରାର ଏକ ସ୍ମୃତି ଚାରଣ କରେ । ଆମ ପ୍ରାଚୀନ ଗଳ୍ପମାନଙ୍କରେ ଚରିତ୍ରମାନଙ୍କ ମଧ୍ୟରେ ରାଜା ପୁଅ, ମନ୍ତ୍ରୀ ପୁଅ, କଟୁଆଳ ପୁଅ ସହିତ ସାଧବ ପୁଅର ସାଧାନା ଓ କୃତିତ୍ୱଙ୍କୁ ସ୍ଥାନ ଦିଆଯାଇଥାଏ । ଦରିଆପାରି ନୌ ବାଣିଜ୍ୟର ମୁଖ୍ୟ ବାହକ ଥିଲେ ଓଡିଆ ସାଧବ ପୁଅ । ମଙ୍ଗଳା ଦେବୀ ନୌବାଣିଜ୍ୟ ପରମ୍ପରାର ଇଷ୍ଟ ଦେବୀ । ଆଶ୍ୱିନ ମାସରେ ନିଶା ମଙ୍ଗଳବାର, ଚୈତ୍ର ମାସରେ ଚୈତ୍ର ମଙ୍ଗଳବାର ଇତ୍ୟାଦି ମା' ମଙ୍ଗଳାଙ୍କ ଉଦ୍ଦେଶ୍ୟରେ ପୂଜା କରାଯାଏ । ମା' ମଙ୍ଗଳା ସର୍ବାଦୃତ ଦେବୀ ନୌକାର ମଙ୍ଗରେ ଅବସ୍ଥାନ କରିଥାନ୍ତି। ଗଭୀର ସାଗର ମଧ୍ୟରେ ସମସ୍ତ ବିପଦରୁ ମା' ମଙ୍ଗଳା ଉଦ୍ଧାର କରନ୍ତି ବୋଲି ଲୋକ ବିଶ୍ୱାସ ରହିଛି । ପ୍ରାଚୀନ ମନ୍ଦିର, ଗୁମ୍ଫା ଓ ଅନ୍ୟାନ ସ୍ଥାନରେ ନୌ ବାଣିଜ୍ୟର ଚିତ୍ର ଖୋଦିତ ହୋଇଥିବାର ଦେଖାଯାଏ । ଏଥିରୁ ସ୍ପଷ୍ଟ ପ୍ରମାଣିତ ଓ ସହଜରେ ଅନୁମେୟ ଏହା ଆମ ଜନ ଜୀବନକୁ କିପରି ଭାବରେ ପ୍ରଭାବିତ କରିଥିଲା । ପୁରୀ ଶ୍ରୀ ମନ୍ଦିର ଭୋଗ ମଣ୍ଡପର କାନ୍ଥ, ଶ୍ରୀ ଲିଙ୍ଗରାଜ ମନ୍ଦିର ଗାତ୍ର, କୋଣାର୍କର ଜଗ ମୋହନ ଓ ଖଣ୍ଡଗିରି – ଉଦୟଗିରିର ଗୁମ୍ଫା ମାନଙ୍କରେ ବୋଇତର ଚିତ୍ର ଦେଖିବାକୁ ମିଳେ । ଭୁବନେଶ୍ୱର ବୋଇତାଳ ମନ୍ଦିର ଛାତ ଏକ ବୋଇତ ସଦୃଶ୍ୟ । ପୁରୀର ମାର୍କଣ୍ଡ ମନ୍ଦିର ପାଖରେ ଥିବା ଏକ ମନ୍ଦିର ବୋଇତ ସଦୃଶ୍ୟ ଦେଖାଯାଏ । ପ୍ରାଚୀ ନଦୀ କୂଳରେ ଗୋଟିଏ ବୋଇତ ଡିହ ରହିଛି । ପ୍ରାଚୀ ଅବବାହିକା ବା କାକଟପୁର ଥାନାର ଅନେକ ସ୍ଥାନରେ ବୋଇତ କୁଦ, ବୋଇତ ଡିହ ଓ ଜାହଜ ପଡିଆ ପ୍ରଭୃତି ଦେଖାଯାଏ । ତୁଳସୀପୁର ଓ ଚଉରାଶୀ ଉତ୍ତରଦିଗରେ ଲଳିତା ଓ ପ୍ରାଚୀ ନଦୀ କୂଳରେ ଗୋଟିଏ ବାଲିକୁଦ ରହିଛି। ଏଠାରେ ବନ୍ଦରେଶ୍ୱର ମହାଦେବ

ବିରାଜମାନ କରିଛନ୍ତି । ପୂର୍ବେ ଏଠାରେ ଏକ ବନ୍ଦର ଥିଲା ତେଣ ମହାଦେବଙ୍କର ନାମ ବନ୍ଦରେଶ୍ୱର ରଖାଯାଇଥିବାର ଜଣାଯାଏ । ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ରଚିତ ଟଲେମିଙ୍କର ଭୂଗୋଳ ପୁସ୍ତକରେ ପ୍ରାଚୀନ କଳିଙ୍ଗର ବନ୍ଦର ଓ ନୌବାଣିଜ୍ୟ କଥା ଉଲ୍ଲେଖ ଅଛି। କୌଟିଲ୍ୟଙ୍କର 'ଅର୍ଥଶାସ୍ତ୍ର'ରେ କଳିଙ୍ଗ ହାତୀ ଖେଦା ଓ ସୂକ୍ଷ୍ମ ବସ୍ତ୍ର ସଂପର୍କରେ ବର୍ଣ୍ଣନା ରହିଛି । ମହାଭାରତ, ରାମୟଣ, ଗରୁଡ, ଅଗ୍ନି ଏବଂ ମାର୍କେଣ୍ଡୟ, ବୌଦ୍ଧ ଜାତକ, ମାନସୀ ମଙ୍ଗଳ, କଥା ସରିତ ସାଗର, ଦଶ କୁମାର ଚରିତ, ଫାହିୟାନ ହୁଏନସାଂଙ୍କ ବିବରଣୀରେ ନୌବାଣିଜ୍ୟର କଥା ବର୍ଣ୍ଣନା କରାଯାଇଅଛି । ଆମ ଲୋକ କଥା, କିମ୍ବଦନ୍ତୀ ପୁରାଣରେ ମଧ୍ୟ ନୌବାଣିଜ୍ୟ କଥା ଦେଖିବାକୁ ମିଳେ । ପିପିଲି ଓ ବାଲେଶ୍ୱରରେ ବୋଇତ ନିର୍ମାଣ କାରଖାନାମାନ ଗଢି ଉଠିଥିଲା । ବ୍ୟାସକବି ଫକୀର ମୋହନ ସେନାପତିଙ୍କର ପୂର୍ବ ପୁରୁଷମାନେ ବୋଇତର ଅଝାଲ ସିଲାଇ କରୁଥିଲେ ଏବଂ ବ୍ୟାସକବି ନିଜେ ମଧ୍ୟ ଏହିକାର୍ଯ୍ୟ କିଛିଦିନ ପାଇଁ କରିଥଲେ। ପୂର୍ବତନ ମୁଖ୍ୟମନ୍ତ୍ରୀ ନୀଳମଣି ରାଉତରାୟଙ୍କ ଆତ୍ମ ଜୀବନରେ ପ୍ରାଚୀନ ନୌବାଣିଜ୍ୟ ସଂପର୍କରେ ଉଲ୍ଲେଖ ଅଛି । ଔପନ୍ୟାସିକ କାହ୍ନୁଚରଣଙ୍କ ଉପନ୍ୟାସ 'ବାଲି ରାଜା'ରେ ମଧ୍ୟ ନୌବାଣିଜ୍ୟର ସ୍ମୃତି ବହନ କରୁଅଛି। ଏହି ଉପନ୍ୟାସ ଲଲାଟେନ୍ଦୁ କେଶରୀଙ୍କ ରାଜତ୍ୱ ସମୟର କଥାବସ୍ତୁକୁ ନେଇ ଆଧାରିତ ।

ସୁବର୍ଣ୍ଣ ଦ୍ୱୀପ ବା ସୁବର୍ଣ୍ଣଭୂମି ସହିତ କଳିଙ୍ଗର ସାଧବମାନେ ବାଣିଜିକ ସଂପର୍କ ସ୍ଥାପନ କରିଥିଲେ । ସେହି ସୁବର୍ଣ୍ଣ ଦ୍ୱୀପ ପୁଞ୍ଜ ଯଥା – ମାଳୟ, ଜାଭା, ବୋର୍ଣ୍ଣିଓ ଓ ବାଲି ପ୍ରଭୃତି ଦ୍ୱୀପକୁ ନେଇ ନାମିତ । ଐତିହାସିକ କଟକ ସହରରେ କାର୍ତ୍ତିକ ପୂର୍ଣ୍ଣିମାରେ ଆରମ୍ଭ ହେଉଥିବା ବାଲିଯାତ୍ରା ମହୋତ୍ସବ ପ୍ରାଚୀନ ନୌବାଣିଜ୍ୟ ସଂସ୍କୃତିର ସ୍ମୃତି ବହନ କରିଥାଏ । କିଛି ବିଦ୍ୱାନ ବାଲିଯାତ୍ର ସହିତ ନୌବାଣିଜ୍ୟର କୌଣସି ସଂପର୍କ ନଥିବାର ସୂଚନା ଦେଇଥାନ୍ତି । ୧୫୦୯ ଖ୍ରୀଷ୍ଟାବ୍ଦରେ ଶ୍ରୀଚୈତନ୍ୟ ମହାପ୍ରଭୁ କାର୍ତ୍ତିକ ପୂର୍ଣ୍ଣିମାରେ କଟକରେ ବିରାଜ ମାନ କରି ଉଦଣ୍ଡ କୀର୍ତ୍ତନ ପୂର୍ବକ ବିଭୁ ପ୍ରେମରେ ନିମୋଜିତ ରହି ପୁଣ୍ୟତୋୟା ମହାନଦୀର ବାଲିରେ ଗଡି–ଗଡି ଲୋଟି ଯାଉଥିଲେ ତେଣୁ ମହାନଦୀ ଏହି ଘାଟକୁ ଗଡଗଡିଆ ଘାଟ କୁହାଯାଏ । ଗଜପତି ମହାରାଜା ପ୍ରତାପରୁଦ୍ର ଦେବ ଏହି ସ୍ମୃତିକୁ ସ୍ମରଣୀୟ କରିବା ଉଦ୍ଦେଶ୍ୟରେ ଗଡ ଗଡିଆ ଘାଟଠାରେ ଜୟ ସ୍ତମ୍ଭ ସ୍ଥାପନ କରି ବାଲିଯାତ୍ରାର ଶୁଭାରମ୍ଭ କରିଥିଲେ । କେତେକ ଗବେଷକମାନେ କୁହନ୍ତି କାର୍ତ୍ତିକ ପୂର୍ଣ୍ଣିମା ଦିନ ବୃନ୍ଦାବନ ଅଭିମୁଖେ କଟକରୁ ଶ୍ରୀଚୈତନ୍ୟଦେବ ଯାତ୍ରା ଆରମ୍ଭ କରିଥିଲେ । ତାଙ୍କ ବିରହର ସ୍ମୃତି ଉଦ୍ଦେଶ୍ୟରେ ପ୍ରତାପ ରୁଦ୍ର ଦେବ କଟକରେ ବାଲିଯାତ୍ରା ଆରମ୍ଭ କରିଥିଲେ । ଶ୍ରୀଚୈତନ୍ୟ ଦେବଙ୍କୁ କଟକର ବିଦାୟ ଦେବା ସମୟରେ ୭୨ ଦଳ ସଂକୀର୍ତ୍ତନ ମଣ୍ଡଳି ସଂକୀର୍ତ୍ତନ କରିଥିଲେ। ବର୍ତ୍ତମାନ ମଧ୍ୟ କଟକରେ ୭୨ ଦଳ ସଂକୀର୍ତ୍ତନ ମଣ୍ଡଳି ଅଛି । ପ୍ରାଚୀନ କଳିଙ୍ଗର ଅନ୍ୟାନ ଦ୍ୱୀପ ସହିତ ବାଣିଜ୍ୟ ସଂପର୍କ ଥିବାବେଳେ ବାଲି ସହିତ ଭାବଗତ ସଂପର୍କ ଥିଲା ଅଧିକ ନିବିଡ । ତେଣୁ କିଛି ଗବେଷକଙ୍କ ମତରେ ସେହି ସ୍ମୃତିକୁ ଉଜ୍ଜୀବିତ କରିବା ନିମନ୍ତେ ଆଜିର ଐତିହାସିକ ବାଲିଯାତ୍ରା ଅନୁଷ୍ଠିତ ହେଉଅଛି । କଳିଙ୍ଗ ଓ ବାଲି ଦ୍ୱୀପ ମଧ୍ୟରେ ସାମାଜିକ ଓ ସାଂସ୍କୃତିକ ସଂପର୍କ ଥିଲା ଅତି ନିବିଡ। ଦେବା–ଦେବୀ ଉପାସନା କ୍ଷେତ୍ରରେ ଓଡିଶା ଓ ବାଲିଦ୍ୱୀପ ମଧ୍ୟରେ ଅନେକ ସାମଞ୍ଜସ୍ୟ ଦେଖାଯାଏ । ଲକ୍ଷ୍ମୀଙ୍କୁ ସେଠାରେ ଶ୍ରୀଦେବୀ ନାମରେ ପୂଜା କରାଯାଏ । ଉଭୟ ଦେବୀଙ୍କୁ ମାର୍ଗଶିର ମାସରେ ଧାନକେଣ୍ଡା ଦ୍ୱାରା ପୂଜା କରାଯାଏ । ବାଲି ଦ୍ୱୀପରେ ବ୍ରାହ୍ମଣ ଧର୍ମର ପ୍ରାଧାନ୍ୟ ଦେଖିବାକୁ ମିଳେ। ବାଲିଦ୍ୱୀପରେ ସାଧାରଣରେ ପ୍ରଚଳିତ ଅଛି ଯେ ଶିବ ସେ ମଧ୍ୟ ବୁଦ୍ଧ । ସେଠାରେ ଧାର୍ମିକ କାର୍ଯ୍ୟରେ ଚାରିଜଣ ବ୍ରାହ୍ମଣ ଓ ଜଣେ ବୌଦ୍ଧ ପୂଜକ କର୍ମକାଣ୍ଡ ସଂପାଦିତ କରିଥାନ୍ତି । ବୌଦ୍ଧ କର୍ମକାଣ୍ଡକୁ 'ଭକ୍ତି' ବୋଲି କୁହାଯାଇଥାଏ । ଓଡିଶା କ୍ଷେତ୍ରରେ ଶୈବ, ବୌଦ୍ଧ ଓ ବୈଷ୍ଣବ ଧର୍ମର ସମନ୍ୱୟରେ ଉଦ୍‌ଭବ ଶ୍ରୀଜଗନ୍ନାଥ ସଂସ୍କୃତି । ବାଲି ଦ୍ୱୀପରେ ଶିବଙ୍କୁ ବୁଦ୍ଧଙ୍କର ଜ୍ୟେଷ୍ଠ ଭାଇ ରୂପେ ବିବେଚନା କରାଯାଏ । ଓଡିଶାରେ ଶ୍ରୀଜଗନ୍ନାଥଙ୍କୁ ଆଦି ବୁଦ୍ଧ ରୂପେ

ଅଭିହିତ କରାଯାଏ । ବୌଦ୍ଧ, ଶୈବ ଓ ଶ୍ରୀଜଗନ୍ନାଥ ଧର୍ମର ସମନ୍ୱୟ ପ୍ରମାଣ କରେବାଲି ଦ୍ୱୀପ କେତେ ମାତ୍ରାରେ ଓଡିଶା ଦ୍ୱାରା ପ୍ରଭାବିତ ହୋଇଥିଲା । ବାଲି ଦ୍ୱୀପରେ ସରସ୍ୱତୀ ପୂଜା, ଦୁର୍ଗା ପୂଜା, ଶିବରାତ୍ରି ପାଳନ କରାଯାଏ ଯାହା ଓଡିଶାରେ ପାଳନ କରାଯାଉଅଛି । ଓଡିଶାରେ ମନ୍ଦିର ପୂଜକ ମାନଙ୍କୁ ପଣ୍ଡା ବୋଲି କୁହାଯାଏ ସେଠାକାର ପୂଜକଙ୍କୁ 'ପଦାଣ୍ଡା' ବୋଲି କୁହାଯାଏ । ବାଲି ଦ୍ୱୀପରେ ବଟ ବୃକ୍ଷକୁ ପବିତ୍ର ବୃକ୍ଷ ଭାବେ ବିବେଚନ କରନ୍ତି । ପୂଜା ସାମଗ୍ରୀ ଭାବେ ଘୃତ, ତଳି, କୁଶ ଏବଂ ମହୁକୁ ଉଭୟେ ଓଡିଶା ଓ ବାଲି ଦ୍ୱୀପରେ ବ୍ୟବହର କରାଯାଏ ସେଠାରେ ପ୍ରଭାବଶାଳୀ ଦେବତା ରୂପେ ଗରୁଡଙ୍କୁ ନିଷ୍ଠାପର ଭାବରେ ପୂଜା କରାଯାଏ । ଭାଷା ଓ ସାହିତ୍ୟ କ୍ଷେତ୍ରରେ ଉଭୟେ ବାଲିଦ୍ୱୀପ ଓ ଓଡିଶା ମଧ୍ୟରେ ଅନେକ ସାମଞ୍ଜସ୍ୟ ରହିଛି । ବାଲି ଦ୍ୱୀପରେ ବ୍ୟବହୃତ ଅନେକ ଶବ୍ଦ ଯାହା ଓଡିଆ ଶବ୍ଦ ସହିତ ସାମସ୍ୟ ରହିଛି । ସେମାନେ ବୋଉକୁ 'ବାଉ' ଚିନାବାଦାମକୁ କୁହନ୍ତି 'ଚିନା', ଅରୁଆ ଭାତକୁ କୁହନ୍ତି 'ଅରୁଅର' । ଟୁଆଁ–ଟୁଇଁ ଗଳ୍ପ ବାଲି ଦ୍ୱୀପ ସାହିତ୍ୟରେ ସ୍ଥାନ ପାଇଅଛି । ସେଠାରେ ବ୍ୟବହୃତ ହେଉଥିବା ତାଳପତ୍ର ପୋଥି ଓଡିଶାର ତାଳପତ୍ର ପୋଥି ସହିତ ପ୍ରାୟ ସମାନ । ଉଭୟ ଅଞ୍ଚଳର ଖାଦ୍ୟପେୟରେ ମଧ୍ୟ ସମାନତା ଦେଖାଯାଏ । ସଜନା ଶାଗ, ମଣ୍ଡା, ଏଣ୍ଡୁରି ପିଠା ପ୍ରିୟ ଖାଦ୍ୟ ବାଲି ଦ୍ୱୀପରେ । ବାଲିଦ୍ୱୀପରେ ପାନର ବହୁଳ ବ୍ୟବହାର ଦେଖାଯାଏ । ବାଲିଦ୍ୱୀପର ଅଧିବାସୀମାନେ ପାନ ଦେଇ ଅତିଥିମାନଙ୍କୁ ସ୍ୱାଗତ ଓ ସମ୍ବର୍ଦ୍ଧନା କରିଥାନ୍ତି । ବାଲିରେ ପ୍ରଚଳିତ ନୃତ୍ୟଶୈଳୀ ଓଡିଶା ଓ ପୂର୍ବଭାରତୀୟ ନୃତ୍ୟ ସହିତ ସାମଞ୍ଜସ୍ୟ ରଖିଥାଏ । ଓଡିଶାର ଗୋଟିପୁଅ ନୃତ୍ୟ ବାଲିର ନୃତ୍ୟ କଳାରେ ମଧ୍ୟ ଦେଖିବାକୁ ମିଳେ । ଆମ ମନ୍ଦିର ଶିଳ୍ପ, କଳା ଓ ସ୍ଥାପତ୍ୟ ବାଲି ସହିତ ସମାନତା ଥିବା ଜଣାଯାଏ । ବାଲିରେ କେତେକ ମନ୍ଦିର ଭୁବନେଶ୍ୱରର ବୈତାଳ ଓ ମୁକ୍ତେଶ୍ୱର ମନ୍ଦିର ସଦୃଶ । ଯାଜପୁର ଜିଲ୍ଲାର ରତ୍ନଗିରି ମହାବିହାର ପାହାଡରେ ଥିବା ଗୁମ୍ଫାର ଚିତ୍ର ଓ ଧଉଳିଠାରେ ଥିବା ଅଶୋକସ୍ତମ୍ଭ ବାଲିର କଳା ଓ ସ୍ଥାପତ୍ୟକୁ ପ୍ରଭାବିତ କରିଥିବାର ଜଣାଯାଏ ।

କଟକର ଐତିହାସିକ ବାଲିଯାତ୍ରା ସହିତ ବାଲିଦ୍ୱୀପର ସଂପର୍କ ଅତି ନିବିଡ । ଓଡିଶାରେ ବୋଇତ ବନ୍ଦାଣ ଉତ୍ସବ ଓ କଟକର ମହାନଦୀ କୂଳରେ ବାଲିଯାତ୍ରା ଉତ୍ସବ ଭଳି ବାଲିର ଅଧିବାସୀମାନେ କଳିଙ୍ଗ ସହିତ ନୌବାଣିଜ୍ୟର ପୂର୍ବ ସ୍ମୃତିକୁ ସ୍ମରଣ କରିବା ପାଇଁ 'ମାସକପମ କେପେସିହ' ଉତ୍ସବ ପାଳନ କରନ୍ତି । ସେ ଦିନ ସେମାନେ ହାତରେ ଛୋଟ–ଛୋଟ ଡଙ୍ଗା ପ୍ରସ୍ତୁତ କରି ତା' ଉପରେ ମହମବତୀ ଜାଳି ପାଣିରେ ଭସାଇ ଥାନ୍ତି । ନିଜ ସନ୍ତାନମାନଙ୍କୁ ସେମାନଙ୍କର ପୂର୍ବପୁରୁଷଙ୍କ ଦେଶ କଳିଙ୍ଗକୁ ପଠାଇବାର ଇଏ ଥାଏ ଏକ ପ୍ରତୀକ । କଟକର ମହାନଦୀ କୂଳରେ ଗଡଗଡିଆ ଘାଟରେ ଆୟୋଜିତ ବିଶ୍ୱ ପ୍ରସିଦ୍ଧ ବାଲିଯାତ୍ରା ନୌବାଣିଜ୍ୟ ପରମ୍ପରାର ସ୍ମୃତି ତୀର୍ଥ । ବାଲିଯାତ୍ରା ପଡିଆ ମୁକ୍ତାକାଶ ସୁନିର୍ବାଚିତ ଓ ମନୋରମ ପରିବେଷ୍ଟନି ମଧ୍ୟରେ ଆବଦ୍ଧ । ବାଲିଯାତ୍ରା ମହୋତ୍ସବ ସ୍ଥାନର ଉତ୍ତର ଦିଗରେ ପୁଣ୍ୟତୋୟା ମହାନଦୀର ଜଳ ସ୍ରୋତ, ଦକ୍ଷିଣରେ ବାରବାଟୀ ଷ୍ଟାଡିୟମ, ପୂର୍ବରେ ନଦୀବନ୍ଧ ଓ ପଶ୍ଚିମରେ ଜାତିର ଗର୍ବ ଓ ଗୌରବ ବାରବାଟୀ ଦୁର୍ଗର ମୁଖଶାଳା, ଗଡଖାଇ, ନବତଳ ପ୍ରାସାଦର ଧ୍ୱଂସାବଶେଷ, ଗଡଚଣ୍ଡୀ । ଶିବ ଠାକୁର ଗଡ ଗଡେଶ୍ୱର ମହାଦେବ ଉତ୍ତର ଦିଗରେ ଅବସ୍ଥାନ ପୂର୍ବକ ଜନମାନସକୁ ସନ୍ତୁଷ୍ଟ ନୟନରେ ଆଶୀର୍ବାଦ ପ୍ରଦାନ କରୁଛନ୍ତି । ଜନ୍ ବିମ୍ସଙ୍କ 'ଜଣେ ଶାସକର ସ୍ମୃତି' ଓ ଶ୍ୟାମ ସୁନ୍ଦର ମିଶ୍ରଙ୍କ ତଥ୍ୟ ଅନୁଯାୟୀ ବାଲିଯାତ୍ରାର ଅନେକ ରୋମାଞ୍ଚକର ଓ ହୃଦୟସ୍ପର୍ଶୀ ଘଟଣା ଜଣାପଡିଥାଏ । ମହାନଦୀ କୂଳରେ ବଡ–ବଡ ଜାହାଜ ଲାଗୁଥିଲା । ଯାହା ତାଳଦଣ୍ଡା କେନାଲ ପର୍ଯ୍ୟନ୍ତ ଆସୁଥିଲା । ଜାହାଜର ପଣ୍ୟଦ୍ରବ୍ୟ ନୌକାଦ୍ୱାରା ସହରକୁ ଅଣାଯାଉଥିଲା । ତତ୍ କାଳୀନ ଭୋଜପୁରୀ, ମାରୱାଡି ଓ ତେଲେଙ୍ଗା, ମହାଜନଙ୍କ ଦ୍ୱାରା ବ୍ୟବସାୟ ପରିଚାଳନା କରାଯାଉଥିଲା । ଜନ ବିମ୍ସଙ୍କ ଶାସନ ସମୟ ଥିଲା ୯ ବର୍ଷ (୧୮୬୯–୭୮) । ସେ ବାଲିଯାତ୍ରାର ସୁପରିଚାଳନା ପାଇଁ ତତ୍‌କାଳୀନ ସମୟରେ ଅନେକ ପଦକ୍ଷେପ ଗ୍ରହଣ କରିଥିଲେ । ପୂର୍ବେ ବାଲିଯାତ୍ରା ଦୁଇଟି ପଡିଆ ବାରବାଟୀ ଦୁର୍ଗର ଦୁଇ ପାର୍ଶ୍ୱ ବାମ ଓ ଦକ୍ଷିଣରେ

ଆୟୋଜିତ ହେଉଥିଲା । ବର୍ତ୍ତମାନ ତିନୋଟି ପଡିଆରେ ଯାତ୍ରା ଅନୁଷ୍ଠିତ ହେଉଅଛି । ତ୍ତକାଳୀନ ସମୟରେ ଯାତ୍ରା ୩,୫,୭, ଦିନ ଧରି ଚାଲୁଥିଲା । ବର୍ତ୍ତମାନ ପ୍ରାୟ ୧୩ ଦିନ ଧରି କାର୍ଯ୍ୟକ୍ରମ କରାଯାଉଅଛି । କଥିତ ଅଛି, ପୂର୍ବେ ସାଧବମାନେ ବାଲି ତଥା ଅନ୍ୟାନ ଦ୍ୱୀପରୁ ଆଣୁଥିବା ପଣ୍ୟଦ୍ରବ୍ୟ ଏଠାରେ ବିକ୍ରୟ କରୁଥିଲେ । ତେଣୁ ସେହି ସ୍ମୃତିକୁ ବହନ କରି ବର୍ତ୍ତମାନ ବାଲିଯାତ୍ରାରେ ବାଣିଜ୍ୟ ବ୍ୟବସାୟର ବିରାଟ ଆୟୋଜନ କରାଯାଉଅଛି । ପୂର୍ବେ ବାଙ୍କୀ, ଡମପଡା, ନରସିଂହପୁର, ବଡମ୍ବା ଓ ପୁରୀ ପ୍ରଭୃତି ଅଞ୍ଚଳରୁ ବ୍ୟବସାୟୀମାନେ ବାଲିଯାତ୍ରାକୁ ଆସୁଥିଲେ । ବର୍ତ୍ତମାନ ରାଜ୍ୟ ତଥା ରାଜ୍ୟ ବାହାରୁ ବହୁ ଖ୍ୟାତନାମା ବ୍ୟବସାୟ ସଂସ୍ଥା ବାଲିଯାତ୍ରାର ବାଣିଜ୍ୟ ମେଳାରେ ଯୋଗଦାନ କରୁଛନ୍ତି । କୁଟୀର ଶିଳ୍ପଜାତ ପଦାର୍ଥ ଯଥା କୁଲା, ଡାଲା, କାଠ ଓ ପଥର ନିର୍ମିତ ବିଭିନ୍ନ ଉପକରଣ ସହିତ ଅତ୍ୟାଧୁନିକ ସାମଗ୍ରୀର ବୃହତ୍ ସମ୍ଭାର ଦେଖିବାକୁ ମିଳେ । ବାଲିଯାତ୍ରା ମେଳା ବର୍ତ୍ତମାନ ଅପରାହ୍ନ ତିନିଟାରୁ ଆରମ୍ଭ ହୋଇ ବିଳମ୍ବିତ ରାତ୍ର ପର୍ଯ୍ୟନ୍ତ ଚାଲୁଥାଏ । ପୂର୍ବେ ବଡି ଭୋର ପର୍ଯ୍ୟନ୍ତ ଯାତ୍ରାରେ କିଣାବିକା ଚାଲୁ ରହୁଥିଲା । ବାଲିଯାତ୍ରା ଅବସରରେ କାର୍ତ୍ତିକ ପୂର୍ଣ୍ଣିମା ଦିନ ଏଠାରେ ନୌକା ବିହାର ଆୟୋଜିତ ହେଉଥିଲା । କିନ୍ତୁ ବର୍ତ୍ତମାନ ଏହା ବନ୍ଦ ରହିଛି । କାର୍ତ୍ତିକ ପୂର୍ଣ୍ଣିମା ଦିନ ଏଠାରେ ପୂର୍ବ ସ୍ମୃତିକୁ ସ୍ମରଣ କରି ସାଧବ ବେଶଧାରୀ ବ୍ୟକ୍ତିମାନଙ୍କ ସହିତ ବୋଇତ ବନ୍ଦାଣ କାର୍ଯ୍ୟକ୍ରମ ଅନୁଷ୍ଠିତ ହୁଏ । ପୂର୍ବେ ସତ୍ୟବ୍ରତ ଷ୍ଟାଡିୟମ ମୁକ୍ତାକାଶ ରଙ୍ଗମରେ ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମ ଆୟୋଜିତ ହେଉଥିଲା । ବର୍ତ୍ତମାନ ଗଣକବି ବୈଷ୍ଣବ ପାଣି ରଙ୍ଗମଞ୍ଚରେ ବିଭିନ୍ନ ନୃତ୍ୟ, ଗୀତ, ସଂଗୀତର ମନୋରମ କାର୍ଯ୍ୟକ୍ରମମାନ ଆୟୋଜିତ ହୁଏ । ଲୋକଗୀତ, ନୃତ୍ୟର ଏକ ଅପୂର୍ବ ମିଳନ ଦେଖିବାକୁ ମିଳେ ବାଲିଯାତ୍ରାରେ । ଏହି ଅବସରରେ ସଭା, ସମିତି, ଆଲୋଚନାଚକ୍ର, ସାହିତ୍ୟ ଆସରରେ ବହୁ ବିଦ୍ୱାନମାନେ ଅଂଶଗ୍ରହଣ କରିଥାନ୍ତି । ଦେଶ ବିଦେଶରୁ ବହୁ ଶ୍ରଦ୍ଧାଳୁ , ଗବେଷକ, ବିଦ୍ୱାନ, ଧର୍ମପ୍ରାଣ ବ୍ୟକ୍ତିମାନଙ୍କର ଏଠାକୁ ଆଗମନ ହୋଇଥାଏ । ଅନେକ ସରକାରୀ ଓ ବେସରକାରୀ ସଂସ୍ଥାର ଷ୍ଟଲମାନେ ଖୋଲିଥାଏ । ଜିଲ୍ଲା ପ୍ରଶାସନ ଓ ସରକାର ବାଲିଯାତ୍ରାର ସୁପରିଚାଳନା ପାଇଁ ପ୍ରଶଂସନୀୟ ପଦକ୍ଷେପ ଗ୍ରହଣ କରିଥାନ୍ତି । ବାଲିଯାତ୍ରା ଆମ ଜାତିର ଗର୍ବ, ଗୌରବ ଓ ସ୍ୱାଭିମାନର ପ୍ରତୀକ । ବାଲିଯାତ୍ରା ଭାଇଚାରା, ବନ୍ଧୁତ୍ୱ, ସଂହତି ଓ ଭଲ ପାଇବାର ବାର୍ତ୍ତା ସମଗ୍ର ବିଶ୍ୱକୁ ପ୍ରଦାନ କରୁଛି ।

ଅଧ୍ୟାପକ, ଇତିହାସ ବିଭାଗ
ସନାତନ ହରିଚନ୍ଦନ ମହାବିଦ୍ୟାଳୟ
ମଦନପୁର, ଖୋର୍ଦ୍ଧା–୭୫୨୦୫୪

❖ ❖ ❖

# ଶିଶୁଦିବସର ଅନୁଚିନ୍ତା

ମୀରା ବେଉରା

ଶିଶୁମାନେ ହିଁ ଦେଶର ଭବିଷ୍ୟତ । ଆମେ ସମସ୍ତେ ଜାଣୁ ଯେ ଆଜିର ଶିଶୁ ଆସନ୍ତାକାଲିର ନାଗରିକ । ସେହି କୋମଳମତି ଶିଶୁମାନଙ୍କ ହୃଦୟ ଛୁଇଁବା ଏତେ ସହଜ କଥା ନୁହେଁ । ସେମାନେ ସବୁବେଳେ ଆମଠାରୁ ସ୍ନେହଶ୍ରଦ୍ଧା ଭଲ ପାଇବା, ସୁରକ୍ଷା ଓ ପ୍ରେମ ଆଶା କରିଥାଆନ୍ତି । ଆମ ଦେଶ ଭାରତବର୍ଷରେ ଏମିତି ଏକ ପ୍ରଧାନମନ୍ତ୍ରୀ ଥିଲେ ଯିଏକି ଶିଶୁମାନଙ୍କୁ ଖୁବ୍ ଭଲ ପାଉଥିଲେ । ସେମାନଙ୍କ ସହ ଖେଳୁଥିଲେ, ବୁଲୁଥିଲେ ଏବଂ ତାଙ୍କ ମନସ୍ତତ୍ତ୍ୱକୁ ବୁଝୁଥିଲେ । ଦେଶର ଏଡ଼େବଡ଼ ପ୍ରଧାନମନ୍ତ୍ରୀ ହୋଇ ମଧ୍ୟ ଦେଶର ଶାସନରେ ଥାଇ ମଧ୍ୟ ଅନେକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟରେ ବ୍ୟସ୍ତ ଥାଇ ସେ ଶିଶୁମାନଙ୍କ ପାଇଁ ସମୟ ବାହାର କରି ପାରୁଥିଲେ । କେବଳ ସେ ଶିଶୁମାନଙ୍କୁ ଭଲ ପାଉନଥିଲେ ଶିଶୁଙ୍କ ବିକାଶ ଓ ଶିଶୁଙ୍କ ଉନ୍ନତି ପାଇଁ ଚିନ୍ତାକରି ତାଙ୍କର ମଙ୍ଗଳ ନିମନ୍ତେ ଅନେକ କାର୍ଯ୍ୟ କରୁଥିଲେ । ସେ ଆଉ କେହି ନୁହନ୍ତି, ସେ ହେଉଛନ୍ତି ଆମର ପ୍ରିୟ ପ୍ରଧାନମନ୍ତ୍ରୀ ଶିଶୁପ୍ରେମୀ ଜବାହରଲାଲ୍ ନେହେରୁ । ତାଙ୍କୁ ଆମେ ଚାଚା ନେହେରୁ ବୋଲି ଡାକିଥାଉ । ତୁମପରି ଛୋଟ ଛୋଟ ଚପଳମତି ଶିଶୁମାନେ ହିଁ ଥିଲେ ତାଙ୍କର ଜୀବନ । ଏପରିକି ସେ ତାଙ୍କ ଜନ୍ମଦିନକୁ ଅର୍ଥାତ ନଭେମ୍ବର ୧୪ ତାରିଖକୁ 'ଶିଶୁ ଦିବସ' ରୂପେ ପାଳନ କରିବାକୁ ଅନୁମତି ଦେଇଥିଲେ ।



ଦିନକର କଥା । ଦିନେ ପିଲାମାନଙ୍କୁ ମିଠାଇ ବଂଟନ କରାଯାଉଥିଲା । ନିକିତିରେ ଗୋଟିଏ ପାଖରେ ବିଭିନ୍ନ ପ୍ରକାର ଜିନିଷ ରଖା ଯାଇଥିଲା ଏବଂ ଅନ୍ୟପାଖରେ ତାଙ୍କୁ ବସାଯାଇ ତାଙ୍କ ଓଜନର ଜିନିଷ ପିଲାମାନଙ୍କୁ ବଂଟନ କରାଯାଉଥିଲା । ଏଥି ସହିତ ମଧ୍ୟ ସେ ଗରିବ ଲୋକମାନଙ୍କୁ ମଧ୍ୟ ଅନେକ ଜିନିଷ ବଂଟନ କରୁଥିଲେ । ତାଙ୍କ ଜୀବନର ଅନେକ ଘଟଣାରୁ ତାଙ୍କ ଶିଶୁପ୍ରେମର ପରିଚୟ ମିଳିଥାଏ । ସେ ତାଙ୍କ ପକେଟରେ ସବୁବେଳେ ଗୋଟିଏ ଗୋଲାପ ଫୁଲଟିଏ ଖୋସୁଥିଲେ । ଏହାର କାରଣ ଥିଲା ତାଙ୍କରି ଗାଡ଼ି ତଳେ ଯେଉଁ ଝିଅଟି ପ୍ରାଣ ହରାଇଥିଲା. ତାହାର ନାମ ଥିଲା ଗୋଲାପ । ସେହି ଝିଅଟିକୁ ମନେ ରଖିବାପାଇଁ ସଦା ସର୍ବଦା ଗୋଲାପ ଫୁଲକୁ ନିଜ ପକେଟ୍‌ରେ ଖୋସୁଥିଲେ । ଆଉ ଦିନକର ଘଟଣା, ୧୯୫୭ ମସିହା ମେ ମାସ । ସେତେବେଳେ ନେହେରୁ ଥାଆନ୍ତି ଆମ ଦେଶର ପ୍ରଧାନମନ୍ତ୍ରୀ । ହଠାତ୍ ଦିନେ ସେ ତାଙ୍କ ଦେହରକ୍ଷୀଙ୍କୁ ସାଙ୍ଗରେ ନ ନେଇ ବୁଆଡ଼େ ଚାଲିଗଲେ । ତାଙ୍କୁ

ଯେତେବେଳେ ଖୋଜା ଚାଲିଲା, ଦେଖାଗଲା ଯେ ସେ ଶିଶୁମାନଙ୍କ ପାଇଁ ନିର୍ମିତ ହୋଇଥିବା ପାର୍କରେ ଅଛନ୍ତି । ସେହି ପାର୍କରେ ସେ ଶିଶୁମାନଙ୍କ ସହ ଅତି ଆନନ୍ଦରେ ଗୋଟିଏ ଖେଳରେ ମାତି ଯାଇଥିଲେ । ଏମିତି ଅନେକ ଘଟଣା ଆମମାନଙ୍କୁ ଚେତାଇ ଦିଏ ଯେ ପ୍ରକୃତରେ ଶିଶୁମାନଙ୍କ ପାଇଁ ତାଙ୍କ ହୃଦୟରେ କେତେ ପ୍ରେମ ଥିଲା । ତାଙ୍କୁ ଯେତବେଳେ ଶିଶୁମାନଙ୍କ ନାଟକ ଦେଖିବା ପାଇଁ ଗୋଟିଏ ନିମନ୍ତ୍ରଣ ପତ୍ର ଆସିଥିଲା, ସେଠାରେ ତାଙ୍କପାଇଁ ଗୋଟିଏ ସ୍ୱତନ୍ତ୍ର ଚୌକିଟିଏ ପଡ଼ିଥିଲା । କିନ୍ତୁ ନେହେରୁ ସେ ଚୌକିରେ ନ ବସି ପିଲାମାନଙ୍କ ପାଖରେ ବସି ପଡ଼ିଥିଲେ । ତାଙ୍କ ସହ ବସି ବାର୍ତ୍ତାଳାପ ହୋଇ ନାଟକକୁ ଉପଭୋଗ କଲେ ।

ଜାପାନୀ ପିଲାମାନେ ହାତୀକୁ ଭଲ ପାଉଥିବାରୁ ସେ ଗୋଟିଏ ହାତୀଛୁଆ ଯାହାର ନାମ ଥିଲା ଇନ୍ଦିରା ତାକୁ ପିଲାମାନଙ୍କ ନିକଟକୁ ପଠାଇ ଦେଇଥିଲେ । କେବଳ ଜାପାନ ନୁହେଁ, କାନାଡ଼ା, ହଲାଣ୍ଡ, ଅଷ୍ଟ୍ରେଲିଆ, ଆମେରିକା ପ୍ରଭୃତି ଦେଶରେ ପିଲାମାନଙ୍କ ପାଇଁ ସେ ଭାରତରୁ ହାତୀ ପଠାଇ ଦେଉଥିଲେ । ସେ ବୁଝିଥିଲେ ଶିଶୁ ହସିଲେ ହସିବ ସାରା ଦୁନିଆ, ହସିବ ଆମ ଦେଶ । ତେଣୁ ସେ ଭୋକିଲା ଶିଶୁମାନଙ୍କ ପାଇଁ ଉପଯୁକ୍ତ ଖାଦ୍ୟ, ରୋଗଗ୍ରସ୍ତ ଶିଶୁମାନଙ୍କ ପାଇଁ ଆର୍ଥିକ ସାହାଯ୍ୟ, ଶିକ୍ଷା ବ୍ୟବସ୍ଥା, ଅନାଥ ଶିଶୁମାନଙ୍କ ପାଇଁ ରହିବା ଖାଇବାର ବନ୍ଦୋବସ୍ତ ମଧ୍ୟ କରୁଥିଲେ ।

ଥରେ ତାଙ୍କୁ ଜଣେ ବୃଦ୍ଧବ୍ୟକ୍ତି ତାଙ୍କୁ ତାଙ୍କର ସତେଜ ଓ ଖୁସି ରହିବାର କାରଣ ପଚାରିବାରୁ ସେ ଉତ୍ତର ଦେଇଥିଲେ ଯେ 'ସେ ଯେହେତୁ ସରଳ, ନିଷ୍ପାପ ହୃଦୟ ଥିବା ଶିଶୁମାନଙ୍କ ଗହଣରେ ଅଧିକ ସମୟ ମିଶନ୍ତି, ତେଣୁ ସେହି ଶିଶୁମାନେ ହିଁ ତାଙ୍କର ସୁନ୍ଦର ଓ ସତେଜ ଦିଶିବାର କାରଣ । ତାଙ୍କର ଶିଶୁମାନଙ୍କ ପ୍ରତି ଯେପରି ସ୍ନେହ, ଶ୍ରଦ୍ଧା ଓ ଭଲ ପାଇବା ରହିଥିଲା, ତାହା ତାଙ୍କୁ ନିଶ୍ଚିତ ଭାବରେ ଅମର କରି ରଖିବ ।

ରଘୁନାଥଜୀଉ ମହାବିଦ୍ୟାଳୟ
ଦେଉଳ ସାହି, କଟକ-୭୫୩୦୦୮

❖ ❖ ❖

# କୁଟିଆ କନ୍ଧଙ୍କ ବନୌଷଧି ଅଭ୍ୟାସ : ଏକ ସଂକ୍ଷିପ୍ତ ଆକଳନ

ଡକ୍ଟର ରଞ୍ଜନ ପ୍ରଧାନ

ଓଡ଼ିଶାରେ ବସବାସ କରୁଥିବା ୧୩ ପ୍ରକାର ବିପଦସଂକୁଳ ଜନଜାତି (Particularly Vulnerable Tribal Group) ଗୋଷ୍ଠୀଙ୍କ ମଧ୍ୟରେ କୁଟିଆ କନ୍ଧ ଅନ୍ୟତମ । କୁଟିଆ କନ୍ଧମାନେ କନ୍ଧମାଳ ଜିଲ୍ଲାର ତୁମୁଡ଼ିବନ୍ଧ ବ୍ଲକର ବେଲଘର ଅଞ୍ଚଳର ୫ଟି ଗ୍ରାମପଞ୍ଚାୟତ (ବେଲଘର, ଗୁମ୍ମା, ଝିରିପାଣି, ଲଙ୍କାଗଡ଼, ବିଲାମାଳ) ଏବଂ କୋଟଗଡ଼ ବ୍ଲକର ୨ଟି ପଞ୍ଚାୟତ (ସୁବର୍ଣ୍ଣଗିରି, ଦୁଗର୍ଭାପାଙ୍ଗା) ଅଞ୍ଚଳରେ ବସବାସ କରୁଛନ୍ତି । କୁଟିଆ କନ୍ଧମାନଙ୍କର କଥିତ ଭାଷା 'କୁଇ'ର ପ୍ରାଚୀନ ରୂପ ବୋଲି ଧରାଯାଏ ।

କୁଟିଆମାନଙ୍କର ଉତ୍ପତ୍ତି ନେଇ ଏକ କିମ୍ବଦନ୍ତୀ ରହିଛି । କନ୍ଧମାନେ ତିନି ଭାଇ । ସମୟକ୍ରମେ ଜଣେ ଡଙ୍ଗର ଭିତରକୁ ଚାଲିଗଲା । ସେ ହେଲା ଡଙ୍ଗରିଆ କନ୍ଧ । ଆଉ ଜଣେ 'କୁଟି' ଅର୍ଥାତ୍ ଗାତ ଭିତରେ ରହିଲା । ସେ ହେଲା କୁଟିଆ କନ୍ଧ । ଅନ୍ୟ ଜଣେ ସମତଳ ଅଞ୍ଚଳକୁ ଚାଲି ଆସିବାରୁ ସେ ହେଲା ଦେଶିଆ କନ୍ଧ । ଆଜି ମଧ୍ୟ କୁଟିଆ କନ୍ଧର ଘର ଭୂମି ତୁଳନାରେ ନିମ୍ନରେ ଥାଏ ।

କୁଟିଆ କନ୍ଧମାନେ ବିଶେଷକରି ତୁମୁଡ଼ିବନ୍ଧ ବ୍ଲକର ବେଲଘର ଅଞ୍ଚଳରେ ବସବାସ କରନ୍ତି । ବେଲଘର କନ୍ଧମାଳ ଜିଲ୍ଲା ସଦର ମହକୁମା ଫୁଲବାଣୀଠାରୁ ୧୬୫ କିଲୋମିଟର ଦୂରରେ ଅବସ୍ଥିତ । ତୁମୁଡ଼ିବନ୍ଧରୁ ବେଲଘରର ଦୂରତା ୨୩ କିଲୋମିଟର । ସେହିଭଳି ରାୟଗଡ଼ା ଜିଲ୍ଲାର ଆମ୍ବାଦୋଳା ଦେଇ ମୁନିଗୁଡ଼ା ସହ ବେଲଘରକୁ ଯୋଗାଯୋଗ ବ୍ୟବସ୍ଥା ରହିଛି । ବେଲଘର ଅଞ୍ଚଳ ସହ କଳାହାଣ୍ଡି ଜିଲ୍ଲାକୁ ମଧ୍ୟ ଗମନାଗମନ ସୁବିଧା ରହିଛି ।

କୁଟିଆ କନ୍ଧମାନେ ଦ୍ରାବିଡ଼ ଗୋଷ୍ଠୀର ଏବଂ ସେମାନେ ପ୍ରୋଟୋ-ଅଷ୍ଟ୍ରାଲଏଡ୍ ଜାତିର । ସେମାନଙ୍କ ରଙ୍ଗ ହାଲୁକା ଧୂସରରୁ ଗାଢ଼ ଧୂସର ହୋଇଥାଏ । ସେମାନଙ୍କର କପାଳ ଚଉଡ଼ା, ବଡ଼ ମୁଣ୍ଡ, ବଡ଼ ନାକ ଏବଂ କେଶ କୁଞ୍ଚୁକୁଞ୍ଚିକା ହୋଇଥାଏ ।

କୁଟିଆ କନ୍ଧମାନେ ବିଶ୍ୱାସ କରନ୍ତି, ସେମାନେ ପୃଥିବୀପୃଷ୍ଠରେ ପ୍ରଥମେ ସୃଷ୍ଟି ହୋଇଛନ୍ତି । କୁଟିଆ କନ୍ଧମାନେ ପୃଥିବୀ ପୃଷ୍ଠରେ ଥିବା ଏକ ଗର୍ତ୍ତ ମଧ୍ୟରୁ ସୃଷ୍ଟି ହୋଇଛନ୍ତି । କୁଟିଆ କନ୍ଧମାନେ ଯେଉଁ ଗର୍ତ୍ତରୁ ସୃଷ୍ଟି ହୋଇଛନ୍ତି ତାହାକୁ 'ସାପାଂଗାଡ଼ା' କୁହାଯାଏ । କୁଟିଆ କନ୍ଧଙ୍କ ଭାଷାରେ 'ସାପାଂ'ର ଅର୍ଥ ପୃଥିବୀ ଏବଂ 'ଗାଡ଼ା'ର ଅର୍ଥ ଗର୍ତ୍ତ । ଏଣୁ 'ସାପାଂଗାଡ଼ା' ହେଉଛି କୁଟିଆ କନ୍ଧମାନଙ୍କର ଆଦି ଉତ୍ପତ୍ତିସ୍ଥଳ । କୁଟିଆ କନ୍ଧ ସମାଜରେ ଏହାକୁ ଏକ ପବିତ୍ର ସ୍ଥାନ ଭାବେ ବିଚାର କରାଯାଏ । ଏଠାରେ କୁଟିଆ କନ୍ଧଙ୍କ ସର୍ବୋଚ୍ଚ ଦେବତା 'ସାପାଂଗାଡ଼ା' ପୂଜା ପାଇଥାନ୍ତି । ସାପାଂଗାଡ଼ା ତୁମୁଡ଼ିବନ୍ଧ ବ୍ଲକ ଅନ୍ତର୍ଗତ ଗୁମ୍ମା ପଞ୍ଚାୟତର କ୍ରାଞ୍ଜା ନିକଟରେ ଅବସ୍ଥିତ ।

କୁଟିଆ କନ୍ଧମାନଙ୍କ ଘର ସଦର ଦାଣ୍ଡ ତୁଳନାରେ ନିମ୍ନ ପତ୍ତନରେ ଥାଏ । ଘରର ଉଚ୍ଚତା ମଧ୍ୟ କମ୍ ଥାଏ । ଯାହା ଫଳରେ ସଦର ଦାଣ୍ଡରୁ ଲକ୍ଷ୍ୟ କଲେ ସେମାନଙ୍କ ଘର ଏକ ଗର୍ତ୍ତ ଭଳି ମନେ ହୁଏ । କୁଇ ଭାଷାରେ 'କୁଟି'ର

ଅର୍ଥ ଗର୍ତ୍ତ । ଏଣୁ ସେମାନଙ୍କୁ କୁଟିଆ କନ୍ଧ କୁହାଯାଏ । ଅପରପକ୍ଷେ, କୁଟିଆ କନ୍ଧମାନେ ଶରୀରରେ ଚିତା କୁଟେଇବାକୁ ଭଲ ପାଆନ୍ତି । ଚିତା କୁଟାଉଥିବାରୁ ଏମାନଙ୍କୁ କୁଟିଆ କନ୍ଧ କୁହାଯାଏ ବୋଲି ଆଉ କେତେକ ମତବ୍ୟକ୍ତ କରନ୍ତି ।

କୁଟିଆ କନ୍ଧ ଜନଜାତିର ବିକାଶ ପାଇଁ ୧୯୭୮ ମସିହାରେ ବେଲଘରଠାରେ 'କୁଟିଆ କନ୍ଧ ଉନ୍ନୟନ ସଂସ୍ଥା' ପ୍ରତିଷ୍ଠା କରାଯାଇଛି । ବେଲଘରଠାରେ ପ୍ରତିଷ୍ଠିତ 'କୁଟିଆ କନ୍ଧ ଉନ୍ନୟନ ସଂସ୍ଥା' ଅଧୀନରେ ତୁମୁଡ଼ିବନ୍ଧ ବ୍ଲକର ବେଲଘର, ବିଲାମାଳ, ଗୁମା ପଞ୍ଚାୟତ ଏବଂ କୋଟଗଡ଼ ବ୍ଲକର ଦୁଗର୍ତ୍ତାପାଙ୍ଗା ପଞ୍ଚାୟତର ମୋଟ ୬୮ଟି କୁଟିଆ ଗ୍ରାମ ଅନ୍ତର୍ଭୁକ୍ତ ହୋଇଛି ।

'କୁଟିଆ କନ୍ଧ ଉନ୍ନୟନ ସଂସ୍ଥା' (କେକେଡିଏ) ଦ୍ୱାରା କରାଯାଇଥିବା ୨୦୧୪-୧୫ ଜନଗଣନା ରିପୋଗର୍ଟ ଅନୁସାରେ ଏହି ୪ଟି ପଞ୍ଚାୟତର ୬୮ଟି ଗ୍ରାମର କୁଟିଆ ଜନସଂଖ୍ୟା ୬,୪୩୬ ଜଣ । ମାତ୍ର, ତୁମୁଡ଼ିବନ୍ଧ ଓ କୋଟଗଡ଼ ବ୍ଲକରେ ଏଭଳି ଅନେକ କୁଟିଆ କନ୍ଧ ବସବାସ କରୁଥିବା ଗ୍ରାମ ରହିଛି ଯେଉଁଗୁଡ଼ିକ 'କୁଟିଆ କନ୍ଧ ଉନ୍ନୟନ ସଂସ୍ଥା' ଅଧୀନରେ ଅନ୍ତର୍ଭୁକ୍ତ ହୋଇନାହିଁ ।

କେକେଡିଏ ଅଧୀନରେ ବେଲଘର ପଞ୍ଚାୟତର ମାଦଲାକୋନା, କୁସୁମୁଣ୍ଡା, ପାଣ୍ଡାମାସ୍କା, ରଙ୍ଗାପାରୁ, ତୁଆକୋଲା, ସାନକୁମୁଡ଼ି, କାଡ଼ାପାନା, ଦେଓଗଡ଼ା, ତାଲାଂପଦର, ଗେର୍ମେଲ, ସାନ ତୁଆକୋଲା, ଡାହାବାଲି, ବଡ଼କୁମୁଡ଼ି, ବାଟିପଡ଼ା, ଗୁର୍ଲିମାସ୍କା, ତଗର୍ତ୍ତାବାଲି, ଗୁନୁସ୍ପା, ଶିମିଳିପଦର, ଅଡ଼ାଲଙ୍ଗୁର, ଷଡ଼େଙ୍ଗି, ଗିରିସାସ୍କା ଆଦି ୨୨ଟି ଗ୍ରାମ ରହିଥିବାବେଳେ ବିଲାମାଳ ପଞ୍ଚାୟତର ରାଜମ, ବିକାପାଙ୍ଗା, କାର୍ଜିକଣା, ମାଣ୍ଡାମାସ୍କା, ଗରାଙ୍ଗ, ଶ୍ରାମୁଲି, ଧୁମମାସ୍କା, କର୍ଲିଙ୍ଗି, ମୁଣ୍ଡିମାସ୍କା, ଜାମୁଗୁଡ଼ା, କିନାଡ଼ି, ସାପାରିଭଟା, ମୁସ୍କାସରୁ, ଆମ୍ବିଡିଖୋଲ, ଦୁତିପଦର, ପସ୍କଡ଼ି, ଗୁମାପଦର ପ୍ରମୁଖ ୧୭ଟି ଗ୍ରାମ ଏବଂ ଗୁମ୍ମା ପଞ୍ଚାୟତର ପେଡ଼ମ, କ୍ରାଞ୍ଜା, ସୁଶାଭଟା, ପାଗାରପାଡ଼ି, କମଳାପଦା, ସଲପଟା, ରାଣ୍ଡାଙ୍ଗ, ପିକୁସି, ଉଷାବାଲି, ଗୁଚୁକା, ଟିଡ଼ିପଦର, ଗମ୍ଭାରି, ସାପେରି, କାଲାଂଗୁଡ଼ା, ପୁକର କଲୋନୀ, ନୂଆମୁଣ୍ଡା, ବୋରିଗୁଡ଼ା, କାଣିଭଟା, ପ୍ରିଙ୍ଗଲ, ଡୁପି ପ୍ରମୁଖ ୨୦ ଗ୍ରାମ ଏବଂ କୋଟଗଡ଼ ବ୍ଲକର ଦୁଗର୍ତ୍ତାପାଙ୍ଗା ପଞ୍ଚାୟତର ଭାଲୁଗୁଡ଼ା, ଶୁକରପଦର, ପାରିମାଲ, ଭଣ୍ଡାସାଲ, ଗୋଲମପାଙ୍ଗା, ଲିଡ୍ରାଙ୍ଗ, ସିନ୍ଧିବାଲି, କାଣିବାରୁ ଓ ପୁତୁଙ୍ଗ ଆଦି ୯ଟି ଗ୍ରାମ ସାମିଲ ହୋଇଛି । ମାତ୍ର ଏହି ୬୮ଟି ଗ୍ରାମ ବ୍ୟତୀତ ତୁମୁଡ଼ିବନ୍ଧ ଏବଂ କୋଟଗଡ଼ ବ୍ଲକରେ ଆହୁରି ଅନେକ କୁଟିଆ କନ୍ଧବହୁଳ ଗ୍ରାମ ରହିଛି, ଯାହାକି 'କୁଟିଆ କନ୍ଧ ଉନ୍ନୟନ ସଂସ୍ଥା' ଅଧୀନରେ ଆସୁନାହିଁ । ତୁମୁଡ଼ିବନ୍ଧ ବ୍ଲକର ଝିରିପାଣି ଓ ଲଙ୍କାଗଡ଼ ପଞ୍ଚାୟତର ୩୦ରୁ ଊର୍ଦ୍ଧ୍ୱ କୁଟିଆ କନ୍ଧ ଗାଁ କେକେଡିଏ ଅନ୍ତର୍ଭୁକ୍ତ ହୋଇନାହିଁ । ଏଥିନେଇ ସରକାର ଦୃଷ୍ଟି ଦେବାକୁ ମଧ୍ୟ ଦାବି ହେଉଛି । ଏହିସବୁ କୁଟିଆ କନ୍ଧ ଗ୍ରାମଗୁଡ଼ିକୁ କେକେଡିଏରେ ସାମିଲ କରାଯାଇ ସେମାନଙ୍କୁ ମଧ୍ୟ ବିକାଶର ମୁଖ୍ୟସ୍ରୋତକୁ ଅଣାଯିବାର ପ୍ରୟାସ ହେବା ଆବଶ୍ୟକ ।

ସେହିଭଳି କୁଟିଆ କନ୍ଧମାନେ କଳାହାଣ୍ଡି ଜିଲ୍ଲାର ଲାଞ୍ଜିଗଡ଼ ବ୍ଲକର କେତେକ ଗ୍ରାମରେ ବସବାସ କରନ୍ତି । ସରକାର ୧୯୮୬ ମସିହାରେ ଲାଞ୍ଜିଗଡ଼ରେ ମଧ୍ୟ ଏକ 'କୁଟିଆ କନ୍ଧ ଉନ୍ନୟନ ସଂସ୍ଥା' ପ୍ରତିଷ୍ଠା କରିଛନ୍ତି । ଲାଞ୍ଜିଗଡ଼ ବ୍ଲକର ଲାଞ୍ଜିଗଡ଼ ଓ ଚାତ୍ରପୁର ଗ୍ରାମପଞ୍ଚାୟତର ପାଖାପାଖି ୨୦ଟି ଗ୍ରାମ ଲାଞ୍ଜିଗଡ଼ କେକେଡିଏ ଅଧୀନରେ ରହିଛନ୍ତି । ଲାଞ୍ଜିଗଡ଼ ପଞ୍ଚାୟତ ଅନ୍ତର୍ଗର୍ତ୍ତ ବାଣିଗାଁ, ଶିମିଳିଭଟା, ଗୋଇପେଟା, କାଶୀବାଡ଼ି, ବନ୍ଧଗୁଡ଼ା, ରେଙ୍ଗୋପାଲି, ଡେଙ୍ଗସଗର୍ଡ଼ି, କେନ୍ଦୁଗୁଡ଼ା ଏବଂ ଚାତ୍ରପୁର ପଞ୍ଚାୟତର କିନାରି, କାପାଗୁଡ଼ା, କୁଟେଣ୍ଡେଲି, ବେଲେମ୍ବା, ମାସ୍କପଦର, ରସକୁନ୍ଦେଲ, ବାଣିପୋଙ୍ଗା, ଭଟାଗୁଡ଼ା, ତୁରିଗୁଡ଼ା ପ୍ରମୁଖ ଗ୍ରାମଗୁଡ଼ିକ ଲାଞ୍ଜିଗଡ଼ କେକେଡିଏ ଅଧୀନରେ ରହିଛି ।

ବେଲଘର ଏବଂ ଲାଞ୍ଜିଗଡ଼ରେ ଥିବା ଏହି ଦୁଇଟି 'କୁଟିଆ କନ୍ଧ ଉନ୍ନୟନ ସଂସ୍ଥା' ଅଣୁ ପ୍ରକଳ୍ପ କୁଟିଆ କନ୍ଧମାନଙ୍କ ବିକାଶ ନିମନ୍ତେ କାର୍ଯ୍ୟ କରୁଛି । ବେଲଘର କୁଟିଆ କନ୍ଧ ଉନ୍ନୟନ ସଂସ୍ଥା ଅଧୀନରେ ଥିବା ୬୮ଟି

ଗ୍ରାମର ମୋଟ କୁଟିଆ କନ୍ଧ ଜନସଂଖ୍ୟା ୫,୫୨୪ ଜଣ ଥିଲାବେଳେ ଲାଞ୍ଜିଗଡ଼ କୁଟିଆ କନ୍ଧ ଉନ୍ନୟନ ସଂସ୍ଥା ଅଧୀନରେ ଥିବା ୧୬ଟି ଗ୍ରାମରେ ମୋଟ ଲୋକ ସଂଖ୍ୟା ୨,୫୪୯ ଜଣ । ଏହି ଦୁଇ କୁଟିଆ କନ୍ଧ ଉନ୍ନୟନ ସଂସ୍ଥା ଅଧୀନରେ ଥିବା ୮୪ଟି ଗ୍ରାମର ମୋଟ ଜନସଂଖ୍ୟା ୮,୦୭୩ ଜଣ । ମାତ୍ର ସମଗ୍ର ଓଡ଼ିଶାରେ କୁଟିଆ କନ୍ଧ ଜନସଂଖ୍ୟା ପାଖାପାଖି ୧୫,୦୦୦ ହେବ ବୋଲି ଆକଳନ କରାଯାଇଛି । ଏହାର କାରଣ ମଧ୍ୟ ସ୍ପଷ୍ଟ । କାରଣ ଏ ଦୁଇଟି କୁଟିଆ କନ୍ଧ ଉନ୍ନୟନ ସଂସ୍ଥା ଅଧୀନରେ ଆଜି ବି ଅନେକ କୁଟିଆ କନ୍ଧ ଗ୍ରାମ ଅନ୍ତର୍ଭୁକ୍ତ ହୋଇପାରିନି ।

୧୮୯୧ ମସିହାରେ ମାନ୍ଦ୍ରାଜର ଜନଗଣନା ରିପୋର୍ଟରେ ଦର୍ଶାଯାଇଛି, ‘‘କନ୍ଧମାନେ ଗଞ୍ଜାମର ମାଳ ଅଞ୍ଚଳରେ ଏବଂ ବିଶାଖାପାଟଣାର କେତେକ ଅଞ୍ଚଳରେ ବାସ କରନ୍ତି । ବଙ୍ଗଳା ଓ ମଧ୍ୟପ୍ରଦେଶରେ ମଧ୍ୟ କୁଇମାନେ ଦେଖାଯାଆନ୍ତି । ସେମାନେ ନିଜକୁ ଜୟପୁର ଜମିଦାରିର ଦକ୍ଷିଣାଞ୍ଚଳ ଏବଂ ଗୋଦାବରୀ ଏଜେନ୍ସିର ‘କୋଇ’ (Koi) ବା ‘କୋୟା’ (Koya) ସହିତ ଏକବାରେ ମେଳ ଖାଉଥିବା ‘କୁଇ’ (Kui) ବୋଲି ପରିଚୟ ଦିଅନ୍ତି ।’’

ତେଲୁଗୁ ଭାଷାରେ ‘କୋଣ୍ଡା’ (Konda) କହିଲେ ମୁଣ୍ଡିଆ ବା ପାହାଡ଼କୁ ବୁଝାଏ । ବିଶାଖାପାଟଣାରେ ‘କୋଟୁବାଣ୍ଡୁଲୁ’ (Kottuvandulu) ଓ ‘କୋଣ୍ଡାଡୋରା’ (Kondadora) ସମ୍ପ୍ରଦାୟର ଲୋକେ ବାସ କରନ୍ତି । ଏ ତେଲୁଗୁ ପ୍ରାଧାନ୍ୟ ଅଞ୍ଚଳର ତେଲୁଗୁ ଲୋକମାନେ ଏମାନଙ୍କୁ ‘କୋଡ୍’ (Kod) କହନ୍ତି । ଏ ନାମଗୁଡ଼ିକର ମୂଳ ‘କୋ’ (Ko) ବା ‘କୁ’ (Ku) । ‘କୁଇ’ ବା ‘କୁଏଞ୍ଜୁ’ମାନଙ୍କର ମୂଳ ମଧ୍ୟ ‘କୁ’ (Ku) । ‘କନ୍ଧ’ ଶବ୍ଦଟି ତେଲୁଗୁ ଶବ୍ଦ ‘କୋଣ୍ଡା’ ବା ‘କୋଡ୍’ରୁ ଉତ୍ପତ୍ତି ହୋଇ ପରେ ‘ଖନ୍ଦ’, ‘କନ୍ଦ’ ଏବଂ ‘କନ୍ଧ’ରେ ପରିଣତ ହୋଇଛି ।

କୁଟିଆ କନ୍ଧଙ୍କ ଗ୍ରାମଗୁଡ଼ିକ ଅନ୍ୟ କନ୍ଧଗ୍ରାମ ପରି ଦୁଇ ଧାଡ଼ିକିଆ ଏବଂ ଏକ ସରଳରେଖାରେ ତିଆରି ହୋଇଥାଏ । ଗାଁଟି ପାହାଡ଼ ପାଦଦେଶରୁ କ୍ରମଶଃ ଉପରକୁ ଉଠିଥିବା ଭଳି ମନେହୁଏ । ମଝିରେ ପ୍ରଶସ୍ତ ରାସ୍ତା ଏବଂ ଦୁଇ ପାର୍ଶ୍ୱରେ ଦୁଇ ଧାଡ଼ିର ଖପୁରୁଲି ଘର ଥାଏ । ଘରଗୁଡ଼ିକ ଲଗାଲଗି ଏବଂ ନୁଆଁଣିଆ ।

ଗ୍ରାମକୁ ଚାରିପଟୁ ବାଉଁଶ କିମ୍ବା କାଠର ବାଡ଼ ଦ୍ୱାରା ଘେରା ଯାଇଥାଏ । ଜଙ୍ଗଲୀ ଜନ୍ତୁଙ୍କ ଆକ୍ରମଣରୁ ରକ୍ଷା ପାଇବା ପାଇଁ ସମ୍ଭବତଃ ଗ୍ରାମ ଚତୁର୍ପାର୍ଶ୍ୱରେ ଏଭଳି କାଠବାଡ଼ ଘେରାଯାଇଥାଏ ।

ଗ୍ରାମ ମଝିରେ ଧରଣୀପେନୁଙ୍କ ଆସ୍ଥାନ ଥାଏ । ଧରଣୀପେନୁଙ୍କ ନିକଟରେ ମେରିଆ ଖମ୍ବ (ମୁଣ୍ଡା) ପୋତାଯାଇଥାଏ । ଏହାକୁ ଧରଣୀ ମୁଣ୍ଡା କୁହାଯାଏ । ଏହିଠାରେହିଁ ଗ୍ରାମ ପରିଷଦର ସମସ୍ତ ପ୍ରକାର ବୈଠକ ବସିଥାଏ । କେତେକ ଗ୍ରାମରେ ଧାଙ୍ଗଡ଼ା ଧାଙ୍ଗିଡ଼ି ଘର ଥାଏ । ଆଜିକାଲି କିନ୍ତୁ ଧାଙ୍ଗଡ଼ା, ଧାଙ୍ଗିଡ଼ି ବସାଘର ଦେଖିବାକୁ ମିଳେନାହିଁ ।

କୁଟିଆ କନ୍ଧଙ୍କ ଘରଗୁଡ଼ିକ ଚାରିକୋଣିଆ ହୋଇଥାଏ । ଘରର କାନ୍ଥ ବାଉଁଶ, କାଠ ଓ କାଦୁଅରେ ପ୍ରସ୍ତୁତ ହୋଇଥାଏ । କୁଟିଆ କନ୍ଧର ଘରକୁ ଲାଗି ଗୋରୁ, ଘୁଷୁରି ଓ ଛେଳି, ମେଣ୍ଢାମାନଙ୍କ ପାଇଁ ଗୁହାଳ ନିର୍ମିତ ହୋଇଥାଏ । ଅତୀତରେ ଗ୍ରାମ ମଝିରେ ଧାଙ୍ଗଡ଼ାବସା ଓ ଧାଙ୍ଗିଡ଼ିବସା ଥିଲା । ମାତ୍ର ଏବେ ଏସବୁ ଯୁବାଗୃହ କୁଟିଆ ଗ୍ରାମରେ ଦେଖିବାକୁ ମିଳୁନାହିଁ । ପ୍ରତି କୁଟିଆ କନ୍ଧ ଗ୍ରାମର ମଝି ଦାଣ୍ଡରେ ଧରଣୀପେନୁ ଶିଳା ଥାଏ । ତିନିଗୋଟି ପଥର ମାଟିରେ ପୋତାଯାଇଥାଏ । ସେଥିମଧ୍ୟରୁ ଜଣେ ହେଉଛନ୍ତି ଧରଣୀ ପେନୁ ଅର୍ଥାତ୍ ଧରିତ୍ରୀ ମାତା ।

**ଜଙ୍ଗଲ, ପାହାଡ଼ ଓ କୁଟିଆ କନ୍ଧଙ୍କ ସ୍ୱାସ୍ଥ୍ୟ**

କୁଟିଆ କନ୍ଧମାନେ ପ୍ରକୃତିର ସନ୍ତାନ । ପ୍ରକୃତି ସେମାନଙ୍କୁ ବଞ୍ଚିବାର କଳା ଶିକ୍ଷା ଦେଇଛି । ନିଜ ଆଖପାଖ ଜଙ୍ଗଲ, ପାହାଡ଼ର ଗଛବୃଛ, ଚେରମୂଳିରୁ ନାନା ପ୍ରକାର ପ୍ରାକୃତିକ ଔଷଧ ସଂଗ୍ରହ କରି କୁଟିଆ କନ୍ଧମାନେ ନିଜକୁ ନାନା ରୋଗ ବଇରାଗରୁ ମୁକ୍ତ କରିଥାନ୍ତି । କୁଟିଆ କନ୍ଧ

ଅଞ୍ଚଳରେ ବହୁ ପ୍ରାକୃତିକ ଚିକିତ୍ସକ ଅର୍ଥାତ୍ କନ୍ଧ ବଇଦମାନେ ଏସବୁ ଚେରମୂଳି ସାଧନା କରି ସାଧାରଣ ଲୋକଙ୍କୁ ଔଷଧ ପ୍ରଦାନ କରିଥାନ୍ତି ।

କୁଟିଆ କନ୍ଧମାନେ ବେଶି ମାତ୍ରାରେ ଡାକ୍ତରଖାନା ଉପରେ ନିର୍ଭରଶୀଳ ନୁହନ୍ତି । ଡାକ୍ତରଖାନା ଆସିବାକୁ ସେମାନେ ପସନ୍ଦ କରି ନଥାନ୍ତି । ସେମାନେ ଏଲୋପ୍ୟାଥି, ହୋମିଓପ୍ୟାଥି ଔଷଧକୁ ବେଶି ବ୍ୟବହାର କରି ନଥାନ୍ତି । ବରଂ ସେମାନେ ଆୟୁର୍ବେଦୀୟ ଔଷଧ ଯଥା– ଜଙ୍ଗଲରୁ ସଂଗୃହୀତ ବିଭିନ୍ନ ଗଛର ଚେର, ମୂଳ, ପତ୍ର, ଫଳ, ଛେଲିରୁ ପ୍ରସ୍ତୁତ ଚେରମୂଳି ଉପରେ ବେଶି ନିର୍ଭରଶୀଳ ।

ପ୍ରକୃତି ନିର୍ମିତ ମଣିଷ ଶରୀର ପ୍ରକୃତିର ସୁନିର୍ଦ୍ଦିଷ୍ଟ ନିୟମରେ ପରିଚାଳିତ ହୋଇଥାଏ । ଏହି ନିୟମରେ ତ୍ରୁଟି ପରିଲକ୍ଷିତ ହେଲେହିଁ ମଣିଷ ରୋଗଗ୍ରସ୍ତ ହୋଇଥାଏ । ଏଣୁ ପ୍ରାକୃତିକ ନିୟମରେ ହୋଇଥିବା ତ୍ରୁଟିକୁ ସଂଶୋଧନ କରିବା ପାଇଁ ପ୍ରକୃତିରେ ଉପଲବ୍ଧ ବନୌଷଧିର ବିଶେଷ ଭୂମିକା ରହିଛି ।

କୋଟଗଡ଼ ବନ୍ୟପ୍ରାଣୀ ଅଭୟାରଣ୍ୟ ଏବଂ ବେଲଘର ବନାଞ୍ଚଳ ଅଧୀନରେ ଅନେକ ଜଙ୍ଗଲ ଓ ପାହାଡ଼ ରହିଛି । ସେସବୁ ଅଞ୍ଚଳରେ ନାନା ପ୍ରକାର ଔଷଧୀୟ ବୃକ୍ଷଲତା ଉପଲବ୍ଧ ହୋଇଥାଏ । କୁଟିଆ କନ୍ଧମାନେ ଏସବୁ ଅଞ୍ଚଳରୁ ଔଷଧୀୟ ବୃକ୍ଷସବୁ ସଂଗ୍ରହ କରିଥାନ୍ତି ।

**କୁଟିଆ କନ୍ଧଙ୍କ ବନୌଷଧି ଅଭ୍ୟାସ**

ଆଧୁନିକ ଚିକିତ୍ସା ପ୍ରଣାଳୀର ଖର୍ଚ୍ଚ ବହୁଳତା ଓ ପାର୍ଶ୍ୱ ପ୍ରତିକ୍ରିୟାରୁ କୁଟିଆ କନ୍ଧମାନେ ଢେର ଦୂରରେ । ଭାରତୀୟ ପ୍ରାଚୀନ ସଂସ୍କୃତିରେ ପ୍ରାୟ ତିନି ହଜାର ବର୍ଷ ପୁରୁଣା ବନୌଷଧି ବିଜ୍ଞାନକୁ ମଧ୍ୟ କୁଟିଆ କନ୍ଧମାନେ ପ୍ରୟୋଗ କରି ଆସୁଛନ୍ତି । 'ଅଥର୍ବ ବେଦ' କାଳରୁ ପଞ୍ଚ ମହାଭୂତତତ୍ୱ (ଆକାଶ, ବାୟୁ, ଅଗ୍ନି, ଜଳ ଓ ପୃଥିବୀ) ଏବଂ ତ୍ରି–ଦୋଷତ୍ୱ (ବାତ, ପିତ୍ତ ଓ କଫ)କୁ ଆଧାର କରି ବନୌଷଧି ଭିତ୍ତିକ ଚିକିତ୍ସା ପ୍ରଣାଳୀକୁ କୁଟିଆ କନ୍ଧ ବଇଦମାନେ ଆପଣେଇ ନେଇଛନ୍ତି ।

ଶରୀରରେ ପଞ୍ଚ ମହାଭୂତ ଏବଂ ତ୍ରିଦୋଷର ବିଭିନ୍ନ ସ୍ଥିତିକୁ ନେଇ ଉତ୍ପନ୍ନ ହେଉଥିବା ନିର୍ଦ୍ଦିଷ୍ଟ ବିଲକ୍ଷଣମାନଙ୍କୁ ବିଭିନ୍ନ ରୋଗର ନାମ ଦିଆଯାଇଥାଏ । କୁଟିଆ କନ୍ଧ ବଇଦଦମାନେ ଶରୀରର ପ୍ରାକୃତିକ କ୍ରିୟା ଉପରେ ଗଭୀର ଅନୁଧ୍ୟାନ କରି ଶରୀରକୁ ପରିଚାଳିତ କରୁଥିବା ବାତ, ପିତ୍ତ ଓ କଫକୁ ଭିତ୍ତି କରି ସରଳ ଚିକିତ୍ସା ପଦ୍ଧତିକୁ ଆପଣେଇ ନେଇଛନ୍ତି । କୁଟିଆ କନ୍ଧମାନେ ରୋଗକୁ ଗୁରୁତ୍ୱ ନ ଦେଇ ବୃଦ୍ଧି ପାଇଥିବା କିମ୍ବା ହ୍ରାସ ପାଇଥିବା ଦୋଷକୁ ଗୁରୁତ୍ୱ ଦେଇଥାନ୍ତି । ଦୋଷକୁ ନିୟନ୍ତ୍ରଣ କରିବା ଶକ୍ତି ଥିବା ବନୌଷଧିର ପ୍ରୟୋଗ କରି କୁଟିଆ କନ୍ଧମାନେ ବହୁ ରୋଗକୁ ଭଲ କରିପାରନ୍ତି । କୁଟିଆ କନ୍ଧଙ୍କ ଦେଶୀୟ ଚିକିତ୍ସାରେ ରୋଗ ଏବଂ ଔଷଧର କୌଣସି ବିଶେଷ ମାନ୍ୟତା ରହେନାହିଁ ।

ଶରୀରର ଦୋଷ ସ୍ଥିତି (ବାତ, ପିତ୍ତ ଓ କଫ)ର ସ୍ଥିତି ଅନୁସାରେ ରୋଗର ଦୋଷ ସ୍ଥିତିକୁ ସଠିକ ନିରୂପଣ କରି ତଦନୁସାରେ ଉପଯୁକ୍ତ ବନୌଷଧି ଠିକ୍ ମାତ୍ରାରେ ନିର୍ଦ୍ଧାରିତ ସମୟ ପର୍ଯ୍ୟନ୍ତ ପ୍ରୟୋଗ କଲେ ଆଧୁନିକ ଚିକିତ୍ସା ପରି ବନୌଷଧି ଚିକିତ୍ସାରେ ମଧ୍ୟ ସୁଫଳ ମିଳିଥାଏ । ଶାରୀରିକ ଓ ମାନସିକ ଲକ୍ଷଣକୁ ଅନୁଧ୍ୟାନ କରି ଶରୀରରେ ବାତ, ପିତ୍ତ ଓ କଫର ସ୍ଥିତିକୁ ଅନୁମାନ କରାଯାଇଥାଏ ।

ବାତ ବୃଦ୍ଧିର ଲକ୍ଷଣ: ଛାତି ଧଡ଼ ଧଡ଼ ହେବା, ପେଟରେ ଗ୍ୟାସ ହେବା, ଆଣ୍ଠୁଗଣ୍ଠି ବ୍ୟଥା ହେବା, କୋଷ୍ଠ କାଠିନ୍ୟ, ନିଦ୍ରାହୀନତା, ଅଧିକ ଶୀତ ଲାଗିବା, ଭୟ ବୃଦ୍ଧି, ଶୀତଦିନେ ଗାଲ ଫାଟିବା, ଆଖି ତଳ କଳା ପଡ଼ିବା, ଅତ୍ୟଧିକ ଦୁଶ୍ଚିନ୍ତା ।

ପିତ୍ତ ବୃଦ୍ଧିର ଲକ୍ଷଣ: ଅତ୍ୟଧିକ ଝାଳ ବୋହିବା, ଅତ୍ୟଧିକ କ୍ଷୁଧା ଲାଗିବା, ପତଳା ନିଦ, ଅତ୍ୟଧିକ ଗରମ ବୋଧ ହେବା, ଝାଡ଼ାର ବେଗରେ ତୀବ୍ରତା, ପାଟିକୁ ପିତା ସ୍ୱାଦ ଲାଗିବା, ଧୈର୍ଯ୍ୟର ଅଭାବ, ପେଟ, ଛାତି, ହାତ ଓ ପାଦ ଜଳାପୋଡ଼ା, ଅକାଳରେ ବାଳ ପାଚିବା, ଅତ୍ୟଧିକ କ୍ରୋଧ କରିବା ।

କଫ ବୃଦ୍ଧିର ଲକ୍ଷଣ: କ୍ଷୁଧାହୀନତା, ଅତ୍ୟଧିକ ନିଦ ଓ ଘୁଙ୍ଗୁଡ଼ି ମାରିବା, କ୍ରୋଧର ଅଭାବ, ଝାଡ଼ା ଓ ଗ୍ୟାସରେ

ଦୁର୍ଗନ୍ଧ, ଝାଡ଼ାର ବେଗ ଅଭାବ, କାମରେ ଢିଲା (ଅଳସୁଆମୀ ଲାଗିବା), ପାଟିକୁ ମିଠା ସ୍ୱାଦ ଲାଗିବା, ଗଳା ସଫା କରି କଥା କହିବାକୁ ପଡ଼ିଥାଏ, ଦେହରେ ଓଜନିଆ ଭାବ, ଘଞ୍ଚ କଳା କୁଞ୍ଚିତ କେଶ ।

ଜଣେ ମଣିଷର ଶରୀରେ ଗୋଟିଏ ଦୋଷର ଲକ୍ଷଣ ପ୍ରକାଶ ପାଇଥାଏ କିମ୍ବା ବେଳେବେଳେ ଦୁଇଟି ଦୋଷର ଲକ୍ଷଣ ମିଶାମିଶି ଭାବେ ପ୍ରକାଶ ପାଇଥାଏ । ଅନେକ ସମୟରେ କେତେକ ଲୋକଙ୍କ ଶରୀରରେ ତିନୋଟି ଯାକ ଦୋଷର ଲକ୍ଷଣ ମିଳିତ ଭାବେ ପ୍ରକାଶ ପାଇଥାଏ । କୁଟିଆ କନ୍ଧ ବଇଦମାନେ ଏସବୁ ଦୋଷ ସ୍ଥିତିକୁ ଅନୁଧ୍ୟାନ କରି ନାନା ପ୍ରକାର ବନୌଷଧିର ପ୍ରୟୋଗ କରିଥାନ୍ତି ।

କୁଟିଆ କନ୍ଧମାନେ ଗଛର ବିଭିନ୍ନ ଅଂଶକୁ ଔଷଧ ଭାବେ ବ୍ୟବହାର କରିଥାନ୍ତି । ସେଗୁଡ଼ିକ ହେଲେ– ପତ୍ର, ଚେର (ମୂଳ), ଫୁଲ, ଫଳ ଏବଂ କାଣ୍ଡ (ଛାଲି) । ଏସବୁକୁ ସେମାନେ ଗରମ ପାଣିରେ ସିଝାଇ କିମ୍ବା ହାତରେ ଦଳି କିମ୍ବା ଶିଳରେ ବାଟି ନାନା ପ୍ରକାର ପଥି ପ୍ରସ୍ତୁତ କରିଥାନ୍ତି ।

### କୁଟିଆ କନ୍ଧ ଅଞ୍ଚଳରେ ପତ୍ରରୁ ପ୍ରସ୍ତୁତ ଔଷଧ

ଗଛର ପତ୍ର ମଣିଷ ସମାଜ ପାଇଁ କେତେ ମୂଲ୍ୟ ବହନ କରିଥାଏ, ତାହା କାହାକୁ ଅଛପା ନଥାଏ । ପତ୍ର ସହାଯ୍ୟରେ ଆଲୋକଶ୍ଳେଷଣ ଜରିଆରେ ଗଛ ନିଜର ଖାଦ୍ୟ ପ୍ରସ୍ତୁତ କରିଥାଏ । ଏହା ପରୋକ୍ଷରେ ସମଗ୍ର ଜୀବଜଗତର ଖାଦ୍ୟ ଅଭାବ ପୂରଣ କରିଥାଏ । କିନ୍ତୁ ପତ୍ରର ନାନା ପ୍ରକାର ଔଷଧୀୟ ଗୁଣ ରହିଛି । କୁଟିଆ କନ୍ଧମାନେ ଜଙ୍ଗଲରୁ ଅନେକ ଗଛ ସଂଗ୍ରହ କରି ସେସବୁ ଗଛର ପତ୍ରରୁ ନାନା ପ୍ରକାର ଔଷଧ ପ୍ରସ୍ତୁତ କରିଥାନ୍ତି ।

**ପୁନ୍ଦେଣି :** କୁଇ ଭାଷାରେ ପୁନ୍ଦେଣି ବୃକ୍ଷକୁ ଓଡ଼ିଆରେ ସୁନାରି ଗଛ କୁହାଯାଏ । ଏହି ଗଛର ପତ୍ରକୁ ଶିଳରେ ବାଟି ଏହାର ରସକୁ ଲେପ ଦେଲେ ସାପ ବିଷ ଝଡ଼ିଯାଇଥାଏ ।

**ବାଚା :** ବାଚା ଏକ ପ୍ରକାର ଘାସ ଜାତୀୟ ଉଦ୍ଭିଦ । ଏହି ଗଛର ପତ୍ରକୁ ବାଟି ଏହାର ରସକୁ ମୁଣ୍ଡରେ ଲଗାଇଲେ ମୁଣ୍ଡବିନ୍ଧା, ଜ୍ୱର ଭଲ ହୋଇଯାଏ ।

**କୁପାନ୍ଦୁଲା :** କୁପାନ୍ଦୁଲା ଏକ ପ୍ରକାର ଲହ (ଲଟା) ଜାତୀୟ ଉଦ୍ଭିଦ । ପାନ ପତ୍ର ଭଳି ଏହାର ଛୋଟ ଛୋଟ ପତ୍ର । ପତ୍ର ସମେତ ଏହାର ଲଟାକୁ ଶିଳରେ ବାଟି ଏକ ସ୍ୱତନ୍ତ୍ର ରସ ପ୍ରସ୍ତୁତ କରାଯାଏ । ଗୋଡ଼, ହାତର ହାଡ଼ ଭାଙ୍ଗି ଯାଇଥିଲେ ବାଉଁଶ ବତା ସହାୟତାରେ ବାନ୍ଧି ଏହି ରସକୁ ଲେପନ କରାଯାଇଥାଏ । ପାଞ୍ଚ ସାତ ଥର ଏହି ରସକୁ ହାଡ଼ ଭାଙ୍ଗି ଯାଇଥିବା ସ୍ଥାନରେ ଲେପନ କଲେ ହାଡ଼ ଯୋଡ଼ି ହୋଇଯାଏ ।

**ଧୂଞ୍ଜାନ :** କୁଇ ଭାଷାରେ ଯାହାକୁ ଧୂଞ୍ଜାନ ଗଛ କୁହାଯାଏ, ତାହାର ଓଡ଼ିଆ ନାମ ହାଡ଼ଶିଙ୍କୁଳି । ଏହା ଏକ ଲଟା ଜାତୀୟ ଉଦ୍ଭିଦ । ଏହାର ପତ୍ରକୁ ଶିଳରେ ବାଟି ଏହାର ରସକୁ ହାଡ଼ ଭାଙ୍ଗି ଯାଇଥିବା ସ୍ଥାନରେ ଲଗାଇଲେ ହାଡ଼ ଯୋଡ଼ି ହୋଇଯାଏ ।

**ବିଶକୋରଣ :** ଓଡ଼ିଆରେ ଏହାକୁ ବିଶଲ୍ୟକରଣୀ ଗଛ କୁହାଯାଏ । ଏହା ଏକ ଲଟା ଜାତୀୟ ଉଦ୍ଭିଦ । ଏହାର ପତ୍ରକୁ ବାଟି ଶରୀରର କଟା ସ୍ଥାନରେ କିମ୍ବା ଘା'ରେ ଲେପନ କଲେ ଘା' ଭଲ ହୋଇଥାଏ । ଏହା ଏକ ପ୍ରକାର ଆଣ୍ଟିବାୟୋଟିକ ଭଳି କାମ କରିଥାଏ । ଏହାର ରସକୁ ପିଇଲେ ଜ୍ୱର ମଧ୍ୟ ଭଲ ହୋଇଥାଏ ।

**ଲାଜାପ୍ରିଓ୍ୱା :** ଓଡ଼ିଆରେ ଏହାକୁ ଲାଜକୁଳି ଗଛ କୁହାଯାଏ । ଏହା ଏକପ୍ରକାର ଲଟା ଜାତୀୟ ଉଦ୍ଭିଦ । ଏହାର ପତ୍ରକୁ ବାଟି ଏହାର ରସ ଘା'ରେ ଲେପ ଦେଲେ ଘା' ଶୀଘ୍ର ଶୁଖିଯାଇଥାଏ ।

**ରିଏଲିଡୁଲା :** ଏହା ଏକ ପ୍ରକାର ଲଟାଜାତୀୟ ଉଦ୍ଭିଦ । ଏହାର ଛୋଟ ଛୋଟ ପତ୍ର । ପତ୍ରକୁ ହାତ ପାପୁଲିରେ ଦଳି ଶୁଂଘାଇ ଦେଲେ ଥଣ୍ଡା, କାଶ, ସର୍ଦ୍ଦି, ଛିଙ୍କ ଭଳି ଆଲର୍ଜି ଭଲ ହୋଇଥାଏ ।

**ବ୍ରାପାମାରା :** ଏହା ଏକ ବଡ଼ ଗଛ । ଓଡ଼ିଆରେ ଏହାକୁ ଗଙ୍ଗଶିଉଳି କହନ୍ତି । ଏହି ଗଛର ପତ୍ରକୁ ପାଣିରେ ସିଝେଇ ପିଇଲେ ମ୍ୟାଲେରିଆ ଜ୍ୱର ଭଲ ହୋଇଥାଏ ।

**ମାଣି :** ବାଉଁଶକୁ କୁଇ ଭାଷାରେ 'ମାଣି' କୁହାଯାଏ । ଏହାର ପତ୍ରକୁ ବାଟି ଉଇ ହୁଙ୍କାର ମାଟି ସହ ପାଣିରେ ସିଝେଇ ଏକ ପ୍ରକାର ପେଷ୍ଟ ତିଆରି କରାଯାଏ । ଏହି ପେଷ୍ଟକୁ ଲେପନ ଦେଲେ ଆଣ୍ଠୁ, ଗଣ୍ଠି ବ୍ୟଥା ଦୂର ହୋଇଥାଏ । ପବନ ଅଟକିଥିଲେ ଭଲ ହୋଇଯାଏ ।

**ଅଡ଼ାଢୁଦେଲି :** ଅଡ଼ାଢୁଦେଲିର ଓଡ଼ିଆ ନାମ ଅରଖ ଗଛ । ଏହା ଏକପ୍ରକାର ବୁଦାଳିଆ ଛୋଟ ବୃକ୍ଷ । ଏହି ଗଛର କ୍ଷୀର ଦାନ୍ତ ପୋକ ଭଲ କରିଥାଏ । ମା' କ୍ଷୀର ଦେଉ ନଥିଲେ ଅଡ଼ାଢୁଦେଲି ଗଛର କ୍ଷୀରକୁ ମା'ର ସ୍ତନାଗ୍ରରେ ଲେପନ କଲେ ମା' କ୍ଷୀର ଦେଇଥାଏ ।

**ବାସଙ୍ଗ :** ଏହି ଗଛର ପତ୍ର ସହ ଗୋଲମରିଚ ବାଟି ପିଇଲେ କାଶ ଓ ଶ୍ୱାସ ରୋଗ ଭଲ ହୁଏ । ବାସଙ୍ଗ ଗଛର ପତ୍ର, ଫୁଲ, ଫଳ, ଛାଲି, ଚେରକୁ ମିଳିତ ଭାବେ ସିଝାଇ ଏକ ଟନିକ୍ ପ୍ରସ୍ତୁତ କରାଯାଏ । ଏହାକୁ ପାନ କଲେ କାଶ, ସର୍ଦ୍ଦି ଓ ଶ୍ୱାସ ରୋଗ ଭଲ ହୋଇଥାଏ ।

**ଖାପେଲି :** ଏହି ଗଛର ଅନ୍ୟ ନାମ ସୁନାରେଗୋଡ଼ା । ଏହାର ପତ୍ରକୁ ବାଟି ଲେପ ଦେଲେ କଟା ଘା' ତୁରନ୍ତ ଭଲ ହୋଇଥାଏ ଏବଂ ଦରଜ କମିଥାଏ । ଏହା ଏକପ୍ରକାର ପେନ୍‌କିଲର ଭଳି କାମ ଦେଇଥାଏ ।

**ବଉଳ :** ଏହା ଏକ ଗଛ ଜାତୀୟ ଉଦ୍ଭିଦ । ଏହାର ପତ୍ରକୁ ସିଝେଇ ସେହି ପାଣିରେ କୁଳି କଲେ ଦାନ୍ତ ବ୍ୟଥା ଦୂର ହୋଇଥାଏ ।

**ଖଜୁରୀ :** ଖଜୁରୀ ଗଛର ପତ୍ରକୁ ବାଟି ଏହାର ରସକୁ ପିଇଲେ ଛୋଟ ଶିଶୁମାନଙ୍କର ବାନ୍ତି ଭଲ ହୋଇଥାଏ ।

**ସର୍ପଗନ୍ଧା :** ଏହି ଗଛର ପତ୍ରକୁ ବାଟି ପିଇଲେ ଏକ୍‌ଜିମା ଓ ଅନ୍ୟାନ୍ୟ ଚର୍ମ ରୋଗ ଭଲ ହୋଇଥାଏ ।

**ବାଡ଼ି ଅର୍କ :** ଏହାର ପତ୍ରକୁ ଶିଳରେ ବାଟି ଏହି ରସକୁ ଦାନ୍ତରେ ଲେପ ଦେଲେ ଦାନ୍ତ ବିନ୍ଧା ଦୂର ହୋଇଥାଏ । ସେହିଭଳି ଏହାର ରସ ବିଭିନ୍ନ ପ୍ରକାର ଚର୍ମ ରୋଗ ମଧ୍ୟ ଭଲ କରିଥାଏ ।

**ମଞ୍ଜୁଆଟି :** ମଞ୍ଜୁଆଟି ପତ୍ରକୁ ଶିଳରେ ବାଟି ଏହାର ରସକୁ ମୁଣ୍ଡରେ ଲଗାଇଲେ ମୁଣ୍ଡରୁ ଉକୁଣୀ ଦୂର ହୋଇଥାଏ । ଏହାର ପତ୍ରକୁ ମଧ୍ୟ କୁଟିଆ କନ୍ଧ ରମଣୀମାନେ ମେହେନ୍ଦି ଭାବେ ବ୍ୟବହାର କରିଥାନ୍ତି । ଏହାର ପତ୍ରକୁ ବାଟି ସେହି ରସକୁ ପିଇଲେ କାମଳ ରୋଗ ଭଲ ହୋଇଥାଏ । ଏହାର ଚେରକୁ ଘୋରି ପିଇଲେ ମଧ୍ୟ କାମଳ ରୋଗ ଦୂର ହୋଇଥାଏ ।

**ନାକୁଡ଼ିଗଡ଼ିଙ୍ଗା :** କୁଇ ଭାଷାରେ ଯାହାକୁ ନାକୁଡ଼ିଗଡ଼ିଙ୍ଗା କୁହାଯାଏ, ତାହାର ଓଡ଼ିଆ ନାମ ଅପମାରଙ୍ଗ । ଏହାର ପତ୍ରକୁ ବାଟି ଲେପ ଦେଲେ କାଛୁ ଓ ଅନ୍ୟାନ୍ୟ ଚର୍ମରୋଗ ଦୂର ହୁଏ ।

**ମାର୍ଡି :** ମାର୍ଡି ପତ୍ରକୁ ବାଟି ଏହାର ରସକୁ ମୁଣ୍ଡରେ ଲଗାଇଲେ ମୁଣ୍ଡ ବିନ୍ଧା ଦୂର ହୋଇଥାଏ ।

**ଭୂଇଁନିମ୍ବ :** ଏହାର ପତ୍ରକୁ ବାଟି ପିଇଲେ ଡାଇବେଟିସ ଭଲ ହୋଇଥାଏ । ପତ୍ରର ରସକୁ ଚର୍ମରେ ଲେପନ କଲେ ଚର୍ମ ରୋଗ ଦୂର ହୋଇଥାଏ ।

**ଥାଲକୁଡ଼ି :** ଏହା ଏକ ଗୁଳ୍ମ । ଏହାର ପତ୍ର ବାଟି ପିଇଲେ ପେଟ ରୋଗ ଦୂର ହୁଏ । ଏହାର ରସ ମଧ୍ୟ ଚର୍ମ ରୋଗ ଦୂର କରିଥାଏ ।

**କରଞ୍ଜ :** ଏହା ଏକ ବଡ଼ ଆକାରର ବୃକ୍ଷ । ଏହାର ପତ୍ରର ରସ ଲଗାଇଲେ କାଛୁକୁଣ୍ଡିଆଦି ଚର୍ମ ରୋଗ ଦୂର ହୁଏ ।

**ଜାମ୍ବୁ :** ପିଜୁଳିକୁ କୁଟିଆ କନ୍ଧମାନେ ଜାମ୍ବୁ କହନ୍ତି । ପିଜୁଳି ଗଛର କଅଁଳିଆ ପତ୍ରକୁ ବାଟି ପିଆଇଲେ ଛୋଟ ଶିଶୁଙ୍କର ତରଳ ଝାଡ଼ା ବନ୍ଦ ହୋଇଥାଏ ।

**ବେଲା :** ବେଲକୁ କୁଟିଆ କନ୍ଧମାନେ 'ବେଲା' କହନ୍ତି । ବେଲ ଏକ ଅତି ଗୁରୁତ୍ୱପୂର୍ଣ୍ଣ ଔଷଧୀୟ ବୃକ୍ଷ ।

ଏହାର ପତ୍ର ଓ ଫଳ ଔଷଧୀୟ ଗୁଣ ବହନ କରିଥାଏ । ଏହାର ପତ୍ରକୁ ବାଟି ରସ ପିଇଲେ ପେଟ ରୋଗ ଦୂର ହୋଇଥାଏ । ଫଳ ରକ୍ତଝାଡ଼ା ଦୂର କରିଥାଏ । ପତ୍ରକୁ ବାଟି ଛାତିରେ ଲେପ ଦେଲେ ଛାତି ବଥା ଦୂର ହୋଇଥାଏ ।

**ନିମ୍ବ :** ନିମ୍ବ ପତ୍ର ବିଭିନ୍ନ ଚର୍ମ ରୋଗ ପାଇଁ ଅବ୍ୟର୍ଥ ଔଷଧ । ଏହାର ପତ୍ର ବାଟି ପିଇଲେ କାମଳ ରୋଗ ଦୂର ହୁଏ । ଏହି ପତ୍ରରୁ ପ୍ରସ୍ତୁତ ଗୁଣ୍ଡ ଏକ ଭଲ ଜୀବାଣୁ ନାଶକ ।

**ଘିକୁଆଁରୀ :** ଏହାର ପତ୍ରକୁ ବାଟି ରସକୁ ପେଟରେ ଲେପ ଦେଲେ ଝାଡ଼ା କରାଇଥାଏ ।

**ମୁନ୍‌ଗା :** ସଜନାକୁ କୁଇ ଭାଷାରେ 'ମୁନ୍‌ଗା' କହନ୍ତି । ଏହାର ପତ୍ରକୁ ବାଟି ଏହାର ରସ ସହ ମହୁକୁ ମିଶାଇ ଆଖିରେ ପକାଇଲେ ଚକ୍ଷୁରୋଗ ଦୂର ହୋଇଥାଏ ।

**କୁଟିଆ କନ୍ଧ ଅଞ୍ଚଳରେ ଚେର (ମୂଳ) ପ୍ରସ୍ତୁତ ଔଷଧ**

ଗଛର ଚେର ମଧ୍ୟ ବିଭିନ୍ନ ଔଷଧ ପ୍ରସ୍ତୁତିରେ ସହାୟକ ହୋଇଥାଏ । କୁଟିଆ କନ୍ଧମାନେ ବିଭିନ୍ନ ଗଛ ସଂଗ୍ରହ କରି ତାହାର ଚେର (ମୂଳ)ରୁ ନାନା ପ୍ରକାର ଔଷଧ ପ୍ରସ୍ତୁତ କରିଥାନ୍ତି ।

**ଡିଣ୍ଡିଡ଼ିପା :** ଏହା ଏକପ୍ରକାର ଲଟା ଜାତୀୟ ଉଭିଦ । ଏହାର ଚେରକୁ ବାଟି ଦାନ୍ତରେ ଲେପ ଦେଲେ ଦାନ୍ତ ବଥା ଦୂର ହୋଇଥାଏ । ଏହି ରସ ମଧ୍ୟ ସାପ ବିଷ ଝଡ଼ାଇ ଦେଇଥାଏ ।

**ଭୂଇଁକୁରା :** କୁଇ ଭାଷାରେ ଭୂଇଁକୁରାକୁ ଓଡ଼ିଆରେ ପାତାଳଗରୁଡ଼ କୁହାଯାଇଥାଏ । ଏହି ଉଭିଦ ଦେଖିବାକୁ ଛୋଟ ଛୋଟ ବୁଦା ଭଳି ହୋଇଥାଏ । ଏହାର ଫୁଲ ଲାଲ ରଙ୍ଗର । ଭୂଇଁକୁରା ଗଛର ଚେରକୁ ବାଟି ଏହାର ରସକୁ ପିଆଇବା ଦ୍ୱାରା ଜ୍ୱର, ଝାଡ଼ା ଓ ଅପସ୍ମାର ରୋଗ ଭଲ ହୋଇଥାଏ ।

**ନାକୁଡ଼ିଗଡ଼ିଙ୍ଗା :** କୁଇ ଭାଷାରେ ଯାହାକୁ ନାକୁଡ଼ିଗଡ଼ିଙ୍ଗା କୁହାଯାଏ, ତାହାର ଓଡ଼ିଆ ନାମ ଅପମାରଙ୍ଗ । ଏହାର ଚେରକୁ କାଟି କାନରେ ପୂରାଇଲେ ସାପ ବିଷ ଝଡ଼ିଯାଏ ।

**ଲାଜାପ୍ରିଓ୍ୱା :** ଓଡ଼ିଆରେ ଏହାକୁ ଲାଜକୁଳି ଗଛ କୁହାଯାଏ । ଏହା ଏକପ୍ରକାର ଲଟା ଜାତୀୟ ଉଭିଦ । ଏହାର ଚେରକୁ ବାଟି ରସ ପିଇଲେ ମୂର୍ଚ୍ଛା ରୋଗ ଭଲ ହୋଇଥାଏ ।

**ଆକୋଲ :** ଆକୋଲ ଗଛର ଚେରକୁ ବାଟି ଏହାର ରସ ପିଇଲେ ବାତ ରୋଗ ଦୂର ହୋଇଥାଏ । ଏହି ରସ ମଧ୍ୟ ସାପ ବିଷ ଝାଡ଼ିଥାଏ ।

**ଦେବନାଶନ :** ଏହି ଗଛର ଚେରକୁ ବାଟି ପିଇଲେ କିମ୍ବା ଦେହ ହାତରେ ବୋଳିଲେ ଜ୍ୱର ଭଲ ହୋଇଥାଏ ।

**ବଡ଼ ଅଲେଇଚ :** ଏହାର ଚେରକୁ ବାଟି ଦାନ୍ତରେ ଲେପ ଦେଲେ ଦାନ୍ତ ବିନ୍ଧା ଦୂର ହୋଇଥାଏ ।

**କାକାଟୋପେରି :** କାକାଟୋପେରି ଗଛର ଓଡ଼ିଆ ନାମ ମହାକାଳ । ଏହାର ଚେରକୁ ବାଟି ପିଇଲେ ସାପ ବିଷ ଝଡ଼ିଯାଏ ।

**ପିଟେଇ :** ପିଟେଇ ଗଛର ଚେରକୁ ବାଟି ପିଆଇଲେ ସାପ ବିଷ ଝଡ଼ିଯାଏ ।

**ଗନ୍ଧାକନ୍ଦା :** ମୁଥା ବା ଗନ୍ଧାକନ୍ଦା ଏକ ପ୍ରକାର ଘାସଜାତୀୟ ଉଭିଦ । ଏହାର ମୂଳକୁ ଔଷଧ ଭାବେ ବ୍ୟବହାର କରାଯାଏ । ଗନ୍ଧାକନ୍ଦାର ମୂଳକୁ ସିଝାଇ ସେବନ କଲେ ଅଜୀର୍ଣ୍ଣ ଦୋଷ ଦୂର ହୁଏ ।

**କୁଟିଆ କନ୍ଧ ଅଞ୍ଚଳରେ ଗଛର କାଣ୍ଡ ଓ ଛାଲିରୁ ପ୍ରସ୍ତୁତ ଔଷଧ**

କୁଟିଆ କନ୍ଧମାନେ ଗଛର ଛାଲି (ବଲ୍‌କଲ)ରୁ ବିଭିନ୍ନ ପ୍ରକାର ମୂଲ୍ୟବାନ ଔଷଧ ପ୍ରସ୍ତୁତ କରିଥାନ୍ତି । ସେସବୁ ଗଛ ସମ୍ପର୍କରେ ଆଲୋଚନା କରାଯାଇପାରେ ।

**ଓ୍ୱାଡ଼ାମାରା :** ଏହା ଏକ ବଡ଼ ଗଛ । କୁଇ ଭାଷାରେ ଗଛକୁ 'ମାରା' କହନ୍ତି । ଓଡ଼ିଆରେ ଏହାକୁ ବାରଙ୍ଗ ଗଛ

କୁହାଯାଇଥାଏ । ଗଛର ଛାଲିରୁ ଏକ ପ୍ରକାର ଅଠା ବାହାରିଥାଏ । ଏହି ଅଠାକୁ ଘା'ରେ ଲଗେଇଲେ ଘା' ଭଲ ହୋଇଯାଏ । ଏହାର ଛାଲିକୁ ଶିଳରେ ବାଟି ଏହି ରସକୁ ମୁଣ୍ଡରେ ଲଗାଇଲେ ଏହା ସାବୁନ ଭଳି କେଶ ସଫା କରିଥାଏ ।

**ବ୍ରାପାମାରା :** ଏହା ଏକ ବଡ଼ ଗଛ । ଓଡ଼ିଆରେ ଏହାକୁ ଗଙ୍ଗଶିଉଳି କହନ୍ତି । ଏହି ଗଛର ଛାଲିକୁ ବାଟି ତା'ର ରସକୁ ଦେହରେ ବୋଳିଲେ ଜ୍ୱର ଛାଡ଼ିଯାଏ ।

**ସତ୍ୟାନା :** ଏହା ଏକ ପ୍ରକାର ବଡ଼ ବୃକ୍ଷ । ଏହାର ଛାଲିକୁ ବାଟି ରସକୁ ପିଇଲେ କିମ୍ବା ଚର୍ମରେ ଲେପ ଦେଲେ ସମସ୍ତ ପ୍ରକାର ଚର୍ମ ରୋଗ ଦୂର ହୋଇଥାଏ । ଏହି ଗଛର ଛାଲିକୁ ଗାଈ କ୍ଷୀରରେ ସିଝେଇ ପିଇଲେ ମଧ୍ୟ ଆଣ୍ଠୁଗଣ୍ଠି ବ୍ୟଥା ଦୂର ହୋଇଥାଏ ।

**କୁରେଇ :** କୁରେଇ ଗଛର ଛାଲିକୁ ଗୋଲମରିଚ ସହ ବାଟି ପିଇଲେ ଦେହ ବିନ୍ଧା ଓ ଦରଜ ଭଲ ହୋଇଥାଏ ।

**ପାପେଣି :** ଏହା ଏକପ୍ରକାର ବଡ଼ ବୃକ୍ଷ । ଏହାର ଛାଲିକୁ ବାଟି ମୁଣ୍ଡରେ ଲଗାଇଲେ ମୁଣ୍ଡବ୍ୟଥା ଦୂର ହୋଇଥାଏ ।

**ଅଶୋକ :** ଅଶୋକ ଗଛର ଛାଲିକୁ ବାଟି ପିଇଲେ ମହିଳାମାନଙ୍କର ଅତ୍ୟଧିକ ରକ୍ତସ୍ରାବ ହ୍ରାସ ପାଇଥାଏ ।

**ମେରା:** ହଳଦିକୁ କୁଟିଆ କନ୍ଧ ଭାଷାରେ 'ମେରା' କହନ୍ତି । ହଳଦିର ବିଭିନ୍ନ ଔଷଧୀୟ ଗୁଣ ରହିଛି । ଏହାର ରସ କିମ୍ବା ଗୁଣ୍ଡ ବିଭିନ୍ନ ପେଟ ରୋଗ ଦୂର କରେ । ଏହା ଏକ ପ୍ରକାର ଆଣ୍ଟିସେପ୍‌ଟିକ ଭଳି କାମ କରେ । ବିଭିନ୍ନ ଚର୍ମ ରୋଗ ଭଲ ହେବା ପାଇଁ ହଳଦି ରସର ଲେପ ଦିଆଯାଇଥାଏ । କୁଟିଆ କନ୍ଧମାନେ ଶିଶୁର ଶରୀରରେ ନିୟମିତ ହଳଦି ବଟା ଲେପନ ଦେଇଥାନ୍ତି ।

**କୁଟିଆ କନ୍ଧ ଅଞ୍ଚଳରେ ଫଳ ଓ ଫୁଲରୁ ପ୍ରସ୍ତୁତ ଔଷଧ**

କୁଟିଆ କନ୍ଧମାନେ ନାନା ଜଙ୍ଗଲୀ ଗଛର ଫଳ ଓ ଫୁଲରୁ ନାନା ପ୍ରକାର ଔଷଧ ଓ ପଥି ପ୍ରସ୍ତୁତ କରିଥାନ୍ତି । ସେସବୁ ଔଷଧୀୟ ଗଛଲତା ସମ୍ପର୍କରେ ନିମ୍ନରେ ଆଲୋଚନା କରାଯାଇପାରେ ।

**କାବଡ଼ା :** କାବଡ଼ା ଏକ ଜଙ୍ଗଲୀ ଲଟା । ଏହା ଦେଖିବାକୁ ଶିଆଳି ଲଟା ଭଳି ଏବଂ ଏହାର ଫଳ ମଧ୍ୟ ଶିଆଳି ଫଳ ଭଳି । ଏହାର ମଞ୍ଜି ଓ ଛାଲିକୁ ବାଟି ଏକ ପ୍ରକାର ଅର୍ଦ୍ଧତରଳ ପେଷ୍ଟ ପ୍ରସ୍ତୁତ କରାଯାଏ । ଶରୀରରୁ ବିଷ କାଟିବା ଏବଂ ଝାଡ଼ା ବନ୍ଦ ପାଇଁ ଏହି ଔଷଧକୁ ବ୍ୟବହାର କରାଯାଇଥାଏ ।

**ସିଙ୍କୟା :** ଏହା ଏକପ୍ରକାର ଲଟା ଜାତୀୟ ଉଦ୍ଭିଦ । ଏହାର ଫଳକୁ ବାଟି ରସକୁ ମୁଣ୍ଡରେ ଲଗାଇଲେ ମୁଣ୍ଡରୁ ଉକୁଣୀ ଓ ରୂପି ଦୂର ହୋଇଥାଏ ।

**ଖାପେଲି :** ଏହି ଗଛର ଅନ୍ୟ ନାମ ସୁନାରେଗୋଡ଼ା । ଏହି ଗଛର ଫଳକୁ ବାଟି ଲେପ ଦେଲେ ଭାଙ୍ଗି ଯାଇଥିବା ହାଡ଼ ଯୋଡ଼େଇ ହୋଇଥାଏ ।

**କୁଗୁରୁପାଲୁ :** ଏହା ଏକ ଲଟାଜାତୀୟ ଉଦ୍ଭିଦ । ଏହାର କ୍ଷୀରକୁ ମଳଦ୍ୱାରରେ ଲଗାଇଲେ ଝାଡ଼ାର ନିର୍ଗମନ ସୁଗମ ହୋଇଥାଏ ।

**କୋଚିଲା :** ଏହି ଗଛର ଫଳକୁ ବାଟି ରସକୁ ପିଇଲେ ବାତ ରୋଗ ଦୂର ହୋଇଥାଏ ।

**ଡାଳିମ୍ବ :** ଡାଳିମ୍ବ ଫଳର ମଞ୍ଜିକୁ ବାଟି ପିଆଇଲେ ତରଳ ଝାଡ଼ା ବନ୍ଦ ହୋଇଥାଏ ।

**କାବା :** ଜଡ଼ା (ଗବ)କୁ କୁଟିଆ କନ୍ଧ ଭାଷାରେ 'କାବା' କୁହାଯାଏ । କୁଟିଆ କନ୍ଧମାନେ ଜଡ଼ା ମଞ୍ଜିରୁ ତେଲ ପ୍ରସ୍ତୁତ କରିଥାନ୍ତି । ଜଡ଼ା ତେଲ ମୁଣ୍ଡକୁ ଥଣ୍ଡା ରଖିଥାଏ । ଅଳ୍ପ ପରିମାଣର ଜଡ଼ାତେଲ ପିଇଲେ ଝାଡ଼ା ପରିଷ୍କାର ହୁଏ ।

**ହରିଡ଼ା :** ଏହା ଏକ ପ୍ରକାର ବଡ଼ ଗଛ । ଏହାର ଫଳକୁ ବାଟି ପିଇଲେ ଅଜୀର୍ଣ୍ଣ ଓ କୋଷ୍ଠକାଠିନ୍ୟ ଦୂର ହୁଏ ।

**ବାହାଡ଼ା :** ଏହା ଏକପ୍ରକାର ବଡ଼ ଗଛ । ଏହାର ମଞ୍ଜିକୁ ବାଟି ଚର୍ମରେ ଲେପନ କଲେ ଘା' ଭଲ ହୋଇଥାଏ ।

**ଅଁଳା :** ଏହା ଏକ ପ୍ରକାର ବଡ଼ ଗଛ । ଅଁଳା ଫଳର ଚୂର୍ଣ୍ଣ ସେବନ କଲେ ଅମ୍ଳପିତ୍ତ ଓ ପେଟରୋଗ ଦୂର ହୁଏ । ଅଁଳା ଫଳର ଗୁଣ୍ଡ ଖାଇଲେ ହଜମ ଭଲ ହୋଇଥାଏ । ହରିଡ଼ା–ବାହାଡ଼ା–ଅଁଳା ତ୍ରିଫଳ ଚୂର୍ଣ୍ଣ ବିଭିନ୍ନ ପେଟ ରୋଗ ଦୂର କରିଥାଏ ।

**ଉପସଂହାର**

ପ୍ରକୃତିକୁ ବାଦ୍ ଦେଇ ଆଦିବାସୀଙ୍କ କଥା ଚିନ୍ତା କରିବା ବୃଥା । କୁଟିଆ କନ୍ଧ ସେଥିରୁ ବାଦ୍ ଯାଆନ୍ତେ କିଭଳି? କୁଟିଆ କନ୍ଧମାନେ ନିଜେ ବାସ କରୁଥିବା ଜଙ୍ଗଲ ଓ ପାହାଡ଼ରୁ ବିଭିନ୍ନ ଗଛର ଚେରମୂଳି ସଂଗ୍ରହ କରି ସେଥିରୁ ନାନାପ୍ରକାର ଔଷଧ ପ୍ରସ୍ତୁତ କରନ୍ତି । ସେମାନେ ଡାକ୍ତରଖାନା ଉପରେ କମ୍ ନିର୍ଭର କରିଥାନ୍ତି । ଏଣୁ ପ୍ରାକୃତିକ ଚିକିତ୍ସା ପାଇଁ ସେମାନେ ବିଭିନ୍ନ ଗଛଲତା ଉପରେ ନିର୍ଭର କରିଥାନ୍ତି ।

**ତଥ୍ୟ ସହାୟତା**

୧. ଲୋକନାଥ ମାଝି, କୁଟିଆ କନ୍ଧ ବଇଦ

ଗ୍ରାମ: ପେଡମ୍, ପଞ୍ଚାୟତ: ଗୁମ୍ମା, ବ୍ଲକ: ତୁମୁଡ଼ିବନ୍ଧ, ଜିଲ୍ଲା: କନ୍ଧମାଳ

୨. ପବିତ୍ର ପାତ୍ର, ସ୍ଥାନୀୟ ବଇଦ

ଗ୍ରାମ: ବେଲଘର, ପଞ୍ଚାୟତ: ବେଲଘର, ବ୍ଲକ: ତୁମୁଡ଼ିବନ୍ଧ, ଜିଲ୍ଲା: କନ୍ଧମାଳ

୩. ଶ୍ରୀଚନ୍ଦ୍ର ମାଝି, କୁଟିଆ କନ୍ଧ ବଇଦ

ଗ୍ରାମ: ଦେଓଗଡ଼ା, ପଞ୍ଚାୟତ: ବେଲଘର, ବ୍ଲକ: ତୁମୁଡ଼ିବନ୍ଧ, ଜିଲ୍ଲା: କନ୍ଧମାଳ

୪. ପ୍ରଧାନ, ଡକ୍ଟର ରଞ୍ଜନ, 'କୁଟିଆ କନ୍ଧ', ପ୍ରକାଶକ: କ୍ରିଏଟିଭ ଓଡ଼ିଶା, କେନ୍ଦ୍ରାପଡ଼ା, ଓଡ଼ିଶା (ପ୍ରକାଶ ଅପେକ୍ଷାରେ)

୫. ମଲ୍ଲିକ, ଡାକ୍ତର ମେଦିନୀଶ୍ୱର, 'କନ୍ଧ ଓ କନ୍ଧମାଳ', ସରସ୍ୱତୀ ପ୍ରିଣ୍ଟର୍ସ, ଫୁଲବାଣୀ, ୧୯୮୧

୬. କୁଟିଆ କନ୍ଧ ଉନ୍ନୟନ ସଂସ୍ଥା (କେକେଡିଏ), ବେଲଘର ।

ଜନଜାତି ଗବେଷକ ତଥା ସାମ୍ବାଦିକ
ଜିଲ୍ଲା ପ୍ରତିନିଧି, 'ସମ୍ବାଦ', କନ୍ଧମାଳ (ଫୁଲବାଣୀ)

❖ ❖ ❖

# ନୌବାଣିଜ୍ୟର ଜୟଯାତ୍ରା କଳିଙ୍ଗ ବାଲିଯାତ୍ରା

**ପ୍ରଫୁଲ୍ଲ କୁମାର ଦାସ**

ମହୋତ୍ସବର ମହୋଦଧି ଉତ୍କଳ, ଯେଉଁଠି ବାର ମାସରେ ତେର ଯାତ୍ରା ଅନୁଷ୍ଠିତ ହୁଏ । ସେଥିମଧ୍ୟରୁ ଯେତେ ଦେଖିଲେ ବି ଦେଖା ସରୁନଥିବ । କି ମନ ଭରୁ ନଥିବ । ଯାତ୍ରାର ନାଁ ବାଲିଯାତ୍ରା । କଳିଙ୍ଗ-ଉତ୍କଳ-ଓଡିଶାର ଐତିହ୍ୟ, ସଂସ୍କୃତି ଓ ନୌବାଣିଜ୍ୟ ପରମ୍ପରାର ସୁମଧୁର ମହକର ନାଁ କଳିଙ୍ଗ ବାଲିଯାତ୍ରା । ଓଡିଶାର ସର୍ବପୁରାତନ ତଥା ସର୍ବବୃହତ୍ ମୁକ୍ତାକାଶ ବାଣିଜ୍ୟିକ, ସାଂସ୍କୃତିକ ମେଳାର ନାଁ ବାଲିଯାତ୍ରା । ସୌଦାଗର ଯୁଗରୁ ପାଟଣମଙ୍ଗଳା ଶକ୍ତିପୀଠ ଚାନ୍ଦବାଲିଠାରେ ଏହି ବାଣିଜ୍ୟ ମେଳାର ମୂଳଦୁଆ ପଡିଥିଲା । କାଳକ୍ରମେ ହଜାରେ ବର୍ଷର ସହର କଟକରେ ଐତିହାସିକ କଳିଙ୍ଗ ବାଲିଯାତ୍ରା ପାଂଚଶହ ବର୍ଷରୁ ଅଧିକ ବୋଲି ଇତିହାସରୁ ଜଣାପଡେ । କଳିଙ୍ଗ ବାଲିଯାତ୍ରାର ବିବିଧ ବର୍ଣ୍ଣବିଭା ଓ ଗୌରବୋଜ୍ଜ୍ୱଳ ଯାତ୍ରାପଥ ଓ ପୃଥିବୀକୁ ନେଇ ଏହି ସ୍ୱତନ୍ତ୍ର ଆଲେଖ୍ୟର ପ୍ରତିବେଦନ ।

ଏହି ସାଂସ୍କୃତିକ ଇତିହାସର ଗୋଟିଏ ପଟରେ ଉତ୍କଳୀୟ ନୌବାଣିଜ୍ୟ ପରମ୍ପରା, ଓଡିଆ ସାଧବ ସୌଦାଗରର ସଂସ୍କୃତି ଓ ଐତିହାସିକ ଐତିହ୍ୟର ଜୟଗାନ, ଅନ୍ୟପଟରେ ବାଲିଯାତ୍ରାର ବିଭିନ୍ନ ଉତ୍ସବ ମହୋତ୍ସବର ଐକ୍ୟତାନ । ଏହି ଉଭୟ ସୀମା ଓ ସୀମାନ୍ତକୁ ନେଇ କଳିଙ୍ଗ ବାଲିଯାତ୍ରାର କେତେକ ମନୋରମ ସ୍ମୃତି ଅନୁଭୂତି, ଯାହାର ସୁଗନ୍ଧ ଅନୁଭବ ଏବଂ ଝଲକାଏ ପୁଲକର ବହୁ ପ୍ରତୀକ୍ଷିତ ଅବସର ଓଡିଆ ଜୀବନଧାରାର ଏକ ଅବିଚ୍ଛେଦ ଅଙ୍ଗ । ବାଲିଯାତ୍ରାର ସବୁଠାରୁ ବଡ ବୈଶିଷ୍ଟ୍ୟଟି ହେଲା ଏହାର ସୁବିଶାଳ ଆକାର ଓ ବିପୁଳ ସମ୍ଭାର । ଜିରାଠୁଁ ହୀରାଯାଏଁ ସବୁ କିଛି ମିଳେ ଏଠାରେ । ଓଡିଆ ଜାତି ପାଇଁ ଏହାର ଅମୃତ ଅନୁଭବ ବେଶ୍ ନିଆରା । ଏଠି ପ୍ରତ୍ୟେକ ମଣିଷ ତାରୁଣ୍ୟରେ ମସଗୁଲ୍ । ଗଡଗଡିଆ ଘାଟରୁ ମହାନଦୀ ପଠାଯାଏଁ ସବୁଆଡେ ଝଲସେ ଆଲୁଅରେ, ଆନନ୍ଦରେ, ଉଲ୍ଲାସରେ । ଯେଉଁ ଯାତ୍ରାର କଥା କାହାଣୀରେ ଭରି ରହିଛି ଉତ୍କଳୀୟ ନୌବାଣିଜ୍ୟ ଇତିହାସର ଗୌରବୋଜ୍ଜ୍ୱଳ ଗାଥା । ଓଡିଆ ସାଧବପୁଅମାନେ କେମିତି ଅତଳ ଅଥଳ ସାଗରକୁ ଅତିକ୍ରମ କରି ବାଣିଜ୍ୟ କରିବାକୁ ବୋଇତ ନେଇ ବାହାରି ଯାଉଥିଲେ ସୁଦୂର ବାଲି,ଜାଭା,ସୁମାତ୍ରା, ସିଂହଳ, ବୋର୍ଣ୍ଣିଓ, ଚୀନ, ବର୍ମା ଆଦି ସାତ ଦରିଆ ପାରି ଦେଶକୁ କେମିତି ଓଡିଶାର ଉତ୍କୃଷ୍ଟ କଳା,କାରିଗରୀ ହସ୍ତଶିଳ୍ପକୁ ପ୍ରଚାରିତ, ପ୍ରସାରିତ କରୁଥିଲେ ବିଦେଶରେ । କେମିତି ବାଣିଜ୍ୟ ସାରି ବିଦେଶରୁ ବୋହି ଆଣୁଥିଲେ ପ୍ରଚୁର ଧନ ସମ୍ପଦ ଓ ମୂଲ୍ୟବାନ ଦ୍ରବ୍ୟମାନ । ପୁଣି ଏହି କାହାଣୀ ସହିତ ଯୋଡି ହୋଇ ଯାଇଛି ଶ୍ରୀଚୈତନ୍ୟଙ୍କ କଟକ ଆଗମନର ବହୁ ଅନାବିଳ ସୁମଧୁର ସ୍ମୃତି ଅନୁଭୂତି । ଯେବେଠାରୁ କାର୍ତ୍ତିକ ପୂର୍ଣ୍ଣିମା ତିଥିରେ କଟକର ଗଡଗଡିଆ ଘାଟ ଓ ମହାନଦୀ ପଠାରେ ଅନୁଷ୍ଠିତ ହୋଇ ଆସୁଛି ବାଲିଯାତ୍ରା ।

ବାଲିଯାତ୍ରାର ଉନ୍ମେଷ ଓ ବିକାଶ କେବେଠାରୁ ସେ ସମ୍ପର୍କରେ ନିର୍ଦ୍ଦିଷ୍ଟ ତଥ୍ୟ ନ ଥିଲେ ହେଁ, ଏ ଯାତ୍ରା ପ୍ରାୟ ପାଞ୍ଚ ଶହ ବର୍ଷ ବୋଲି ଶୁଣିବାକୁ ମିଳିଛି । ପ୍ରଥମେ

ଦିନିକିଆରୁ ଆରମ୍ଭ ହୋଇ ଏବେ ଦୁଇ ସପ୍ତାହରେ ପହଁଞ୍ଚିଛି । ଏହି ଉତ୍ସବ କାଳକ୍ରମେ ରାଜ୍ୟ ମହୋତ୍ସବ ମାନ୍ୟତା ପାଇବା ପରେ ଏବେ ଜାତୀୟ ଓ ଅନ୍ତର୍ଜାତୀୟ ମାନ୍ୟତା ପାଇବା ପାଇଁ ଉଦ୍ୟମ ଆରମ୍ଭ ହୋଇଛି । ପ୍ରତ୍ୟେକ ଜାତି ଓ ଦେଶର ସାଂସ୍କୃତିକ ଜୀବନ ଯାତ୍ରାରେ ଉତ୍ସବ ମହୋତ୍ସବର ଅତି ମହତ୍ତ୍ୱପୂର୍ଣ୍ଣ ସ୍ଥାନ ରହିଅଛି । ପ୍ରାଚୀନ କଳିଙ୍ଗର ନୌବାଣିଜ୍ୟ ବେଶ୍ ଗରିମାମୟ କାଳଜୟୀ ଓ ବିଶ୍ୱ ବନ୍ଦନୀୟ । ଏହି ନୌବାଣିଜ୍ୟ ପରମ୍ପରା ପ୍ରାଚୀନ ଜନଶ୍ରୁତି ଓ ଇତିହାସରୁ ଜଣାଯାଏ । ତତ୍କାଳୀନ ସମୟରେ କଳିଙ୍ଗର ଦୁର୍ଦ୍ଧର୍ଷ ନିଆରା ପଣିଆ ସାରା ବିଶ୍ୱରେ 'କଳିଙ୍ଗାଃ ସାହସିକାଃ' ରୂପେ ପରିଗଣିତ ହୋଇଥିଲା । ମେଘାସ୍ଥିନିସ୍ ଓ ଫାୟିଆନ୍‌ଙ୍କ ବିବରଣୀରୁ ଜଣାଯାଏ ଖ୍ରୀଷ୍ଟପୂର୍ବ ୪ର୍ଥ ଶତାବ୍ଦୀରେ କଳିଙ୍ଗରେ ନଦୀ ପଥ ଓ ସମୁଦ୍ର ପଥରେ ନୌବାଣିଜ୍ୟ ଉଚ୍ଚକୋଟୀର ଥିଲା । କାରଣ ସେତେବେଳେ କଳିଙ୍ଗରେ ବହୁତ ପ୍ରସିଦ୍ଧ ବନ୍ଦର ଥିଲା । ନନା ଗେନ,କାଟକଦ୍ଦମ,ପଲୌରା,କୋଳନଗର, କୋଶମ୍ଭ, ମନୋଜ, ଦୋସରମ୍, ତନ୍ଦିସ୍, ଗଙ୍ଗେ, ତାମଲିତି, କଂଟକସିଲାଇ, ଦନ୍ତପୁର ବ୍ୟତୀତ ପିପିଲି, ଚାନ୍ଦବାଲି, ଧାମରା, ପାରାଦ୍ୱୀପ, ଚେଲିତୋଳ, ପୁରୀ, ଚିଲିକା ଆଦି ପ୍ରାଚୀନ ବନ୍ଦର ଥିବାର ପ୍ରମାଣ ମିଳେ ।

ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା କଳିଙ୍ଗର ସାମ୍ରାଜ୍ୟ । ସେସମୟରେ ତାମଲିତି ବା ତାମ୍ରଲିପି କଳିଙ୍ଗର ଶ୍ରେଷ୍ଠ ବନ୍ଦର ଥିଲା । ଏଠାରୁ ସାଧବ ପୁଅମାନେ ପାଲଟଣା ବୋଇତରେ ଚୀନ, ସିଂହଳ, ଇଣ୍ଡୋନେସିଆ, ମାଳୟ, ବ୍ରହ୍ମଦେଶ, ଥାଇଲାଣ୍ଡ ଓ ଭିଏତନାମ୍ ଆଦି ଦେଶକୁ ଯାଉଥିଲେ । ସାଧବମାନେ ସାଙ୍ଗରେ ସମ୍ବଲପୁରୀ ଓ ବରହମପୁରୀ ପାଟବସ୍ତ୍ର, କଟକର ତାରକସି କାରୁକାର୍ଯ୍ୟ ଅଳଙ୍କାର, କାଠ, ପଥର ଖୋଦେଇ ମୂର୍ତ୍ତି, ବିଭିନ୍ନ ସୁଗନ୍ଧ ସାମଗ୍ରୀ ନେଇ ଦୂର ବିଦେଶରୁ ଆମଦାନୀ କରୁଥିଲେ ସୁନା, ରୁପା, କାଚ ଅଳଙ୍କାର, ଚନ୍ଦ୍ରକାନ୍ତ ମଣି, ସିଙ୍ଗ ପାନିଆ, ଚୀନ୍ ଦେଶର ରେଶମୀ ବସ୍ତ୍ର, ବାଘ ନଖର ମାଳି ଓ ହାତୀ ଦାନ୍ତର ଫରୁଆ ଇତ୍ୟାଦି । ସେତେବେଳେ କଳିଙ୍ଗରେ ମଧ୍ୟ ବଡ ବଡ ବୋଇତରେ ହାତୀ କିଣାବିକା ହେଉଥିଲା । ମାଦଳା ପାଞ୍ଜିରୁ ଜଣାଯାଏ ଭୋଜରାଜା ବଡ ବଡ କାଠଦ୍ୱାରା ଜଳ ଜାହାଜ ନିର୍ମାଣ କରୁଥିଲେ । ସେସମୟରେ ଭିନ୍ନ ଭିନ୍ନ ବହୁ ପ୍ରକାର ନୌକା ନିର୍ମାଣ ହେଉଥିଲା । ଏକ ମାସ୍ତୁଲ ଜାହାଜର ବର୍ଣ୍ଣ ନୀଳବର୍ଣ୍ଣ, ଦୁଇ ମାସ୍ତୁଲ ଜାହାଜ ପୀତବର୍ଣ୍ଣ , ତିନି ମାସ୍ତୁଲ ରକ୍ତ ବର୍ଣ୍ଣ, ଚାରି ମାସ୍ତୁଲ ଶ୍ୱେତବର୍ଣ୍ଣ ଏବଂ ଏହି ଜଳଯାନର ମୁହଁ ନାନା ପ୍ରକାର ଆକୃତିରେ ହୋଇଥାଏ । ଜାହାଜର କୋଠରି ଅନୁପାତରେ ସର୍ବ ମନ୍ଦିରା ମଧ୍ୟ ମନ୍ଦିରା ଓ ଅଗ୍ର ମନ୍ଦିରା, କୁହାଯାଉଥିଲା । ଭାରତୀୟ ଓ କଳିଙ୍ଗର ନୌଯାତ୍ରା ପ୍ରାଚୀନ କାଳରୁ ପୁରାଣ, ଭାଗବତ, ମହାଭାରତ ଓ ରାମାୟଣରୁ ଜଣାଯାଏ । ଆମର ଲୋକ ସାହିତ୍ୟ,ଜନକ ଜାତକ, ଖୁଦୁରୁକୁଣୀ ଓଷା ଓ ଖୁଲଣା ସୁନ୍ଦରୀ କଥାରୁ ପ୍ରାଚୀନ କଳିଙ୍ଗ–ଉତ୍କଳ–ଓଡିଶାର ନୌବାଣିଜ୍ୟ ସ୍ମୃତି ଚାରଣ ହୋଇଥାଏ । ସାଧାରଣତଃ କଳିଙ୍ଗର କୈବର୍ତ୍ତମାନେ ନୌକା ଚାଳନା ଓ ନୌକା ନିର୍ମାଣର ଜ୍ଞାନକୌଶଳ ଜାଣିଥିଲେ । କୈବର୍ତ୍ତମାନଙ୍କର ଇଷ୍ଟଦେବୀ ବାସୋଳୀ ଓ ଏହା ଚାରିପ୍ରକାର ଯଥା–ଦାଣ୍ଡ ବାସୋଳୀ, ଘୋଡା ବାସୋଳୀ, ସିଦ୍ଧ ବାସୋଳୀ ଓ ବନ୍ଧ ବାସୋଳୀ ।

ସାଧବ ପୁଅର କାହାଣୀ ହେଉ ବା ଉତ୍କଳର ଡଙ୍ଗା ଭସା ବୋଇତ ବନ୍ଦାଣ କଥା ହେଉ ଏହା ସମସ୍ତେ ଜାଣନ୍ତି । କାର୍ତ୍ତିକ ମାସରେ ବିଦେଶରୁ ସାଧବ ପୁଅ ଫେରି ଆସୁଥିଲେ । ପୁଣି ପୁନର୍ବାର ପବନର ଅନୁକୂଳ ପାଗ ଦେଖି ଜାହାଜ ବା ବୋଇତ ନେଇ ଯାତ୍ରା କରୁଥିଲେ । ସୁନୀଳ ସାଗର ବକ୍ଷରେ ନୌବାଣିଜ୍ୟର ଏହି ଯୁଗ ଯୁଗର ସ୍ମୃତି କଳିଙ୍ଗର ପରମ୍ପରା ଓ ସଂସ୍କୃତିକୁ ସମୃଦ୍ଧ କରୁଥିଲା । କାର୍ତ୍ତିକ ପୂର୍ଣ୍ଣିମୀର ହେମାଳ ଶୀତୁଆ ପାହାନ୍ତିରେ ସାଧବ ଝିଅ ବୋହୂମାନେ ଡଙ୍ଗା ଉପରେ ପାନଗୁଆ ରଖି ଦୀପ ଜଳାଇ ''ଆ–କା–ମା–ବୈ ପାନ ଗୁଆ ଥୋଇ,ପାନ ଗୁଆ ତୋର ମାସକ ଧରମ ମୋର'' କଦଳୀ ପାଟୁଙ୍ଗାରେ ନୌକାଟିଏ ନେଇ ଓଡିଶାର ନଈ, ନାଳ, ପୋଖରୀରେ ଭସାଇ ଦେଇଥାନ୍ତି । ଏହି ବୋଇତ ବନ୍ଦାଣ ପରମ୍ପରା ଚେଲିତୋଳ ବନ୍ଦରରେ ଅଷ୍ଟମ ଶତାବ୍ଦୀରେ ଖ୍ୟାତିଲାଭ ହୋଇ

ଆଜି ଯାଏଁ ଚଳି ଆସୁଛି । ସମୟର ମହାସ୍ରୋତରେ ସ୍ୱାଧୀନ ଭାରତରେ ମୁମ୍ବାଇ, କଲିକତା, ଚେନ୍ନାଇ, କୋଚି, ଭାଇଜାଗ୍ ନାମରେ ପାଂଚଗୋଟି ବଡ ବନ୍ଦର , ଗୁଜରାଟର କାଣ୍ଡଲା ଓ ମମାଗୋଆ ବନ୍ଦର ସରକାରଙ୍କ ଦ୍ୱାରା ସ୍ୱୀକୃତି ଲାଭ କଲା । ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ଓ ଓଡିଶାର ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କ ଦ୍ୱାରା ୧୯୬୨ ମସିହା ଜାନୁଆରୀ ୩ ତାରିଖରେ ପାରାଦ୍ୱୀପ ବନ୍ଦରର ଭିତ୍ତିପ୍ରସ୍ତର ସ୍ଥାପନ ହୋଇଥିଲା ।

ଅନ୍ତର୍ଜାତୀୟ ନୌବାଣିଜ୍ୟ ଇତିହାସକୁ ଅୟନ କଲେ କଳିଙ୍ଗ ନୌବାଣିଜ୍ୟର ସ୍ୱତନ୍ତ୍ର ପ୍ରସିଦ୍ଧି ଜଣାପଡେ । ଏହି ନୌବାଣିଜ୍ୟର ଅମୂଲ୍ୟ କଥା ଗାଥା ସଂସ୍କୃତି ସଭ୍ୟତା ସ୍ମୃତିକୁ ଋଦ୍ଧିମନ୍ତ କରିବାକୁ ଯାଇ ଓଡିଶାର ବଡ ନଦୀ ମହାନଦୀର ବାଲିରେ ଯେଉଁ ମହୋତ୍ସବର ମହାମିଳନର ମହାପର୍ବ ଐତିହାସିକ କଳିଙ୍ଗ ବାଲିଯାତ୍ରା ଅନୁଷ୍ଠିତ ହେଉଛି ତାହା ଜାତୀୟ ଓ ଆନ୍ତର୍ଜାତିକ ସଂହତିର ମହାମହକ । ଯାହାର ଗହ ଗହ ନାଦରେ ଫାଟି ପଡୁଛି ଓଡିଶାର ମାଟିପାଣି ପବନ ଓ ଆକାଶ ବତାସ । ୧୯୭୨ ମସିହାରେ ପାରାଦ୍ୱୀପରେ ପ୍ରଥମ ବାଲିଯାତ୍ରା ଆରମ୍ଭ ହୋଇଥିଲା । ୧୯୭୫ରୁ ବନ୍ଦର କର୍ତ୍ତୃପକ୍ଷ ଏହି ବାଲିଯାତ୍ରା ପାଳନ କରିଆସୁଛନ୍ତି । ୧୯୯୨ ନଭେମ୍ବର ୧୦ ତାରିଖ କାର୍ତ୍ତିକ ପୂର୍ଣ୍ଣମୀରେ ତତ୍କାଳୀନ କଳିଙ୍ଗର ଭୂମିପୁତ୍ର ବିଜୁ ପଟ୍ଟନାୟକ କଳିଙ୍ଗର ଐତିହାସିକ ବାଲିଯାତ୍ରାର ଗୌରବମୟ ଜଳଯାତ୍ରାକୁ ଉଜ୍ଜୀବିତ କରିଥିଲେ । ଏ ଜାତିର ଗୌରବ ଓ ଗରିମାକୁ ପ୍ରତିପାଦିତ କରିବା ପାଇଁ କଳିଙ୍ଗ ଲଳନା ସୁଶ୍ରୀ ନିବେଦିତା ଆଚାର୍ଯ୍ୟଙ୍କ ସମେତ ଆଠଜଣ ନୌଯାତ୍ରୀଙ୍କୁ ନେଇ ''INSY SAMUDRA'' ବାଲିଦ୍ୱୀପ ଅଭିମୁଖେ ଜଳଯାତ୍ରା ଆରମ୍ଭ କରିଥିଲେ । ଯାତ୍ରା କାଳରେ ସେମାନେ ବିଶାଖାପାଟନା, ଚେନ୍ନାଇ, ଆଣ୍ଡାମାନ ନିକୋବର ଦ୍ୱୀପ, ସୁମାତ୍ରା,ଜାକର୍ତା ଦେଇ ୧୯୯୩ ଜାନୁୟାରୀ ୩୦ ତାରିଖରେ ବାଲିଯାତ୍ରାରେ ପହଁଚିଥିଲେ । ବାଲିରେ ଆୟୋଜିତ ଓଡିଶା ଉତ୍ସବକୁ ବାଲିର ରାଜ୍ୟପାଳ ଶ୍ରୀଓକା ଉଦ୍‌ଘାଟନ କରିଥିଲେ ଓ ଇଣ୍ଡୋନେସିଆର ସମାଜ କଲ୍ୟାଣ ମନ୍ତ୍ରୀ ଶ୍ରୀମତୀ ହାରେୟତି ସୋବାଦିଓ ଯୋଗ ଦେଇଥିଲେ । କଳିଙ୍ଗ ବାଲିଯାତ୍ରା ଓ ବୋଇତ ଉତ୍ସବ ଉତ୍କଳୀୟ ବଣିକମାନଙ୍କର ସମୃଦ୍ଧ ପରମ୍ପରା ଓଡିଶାର ସ୍ୱର୍ଣ୍ଣିମ ଇତିହାସରେ ସବୁଦିନ ପାଇଁ ମନେ ରହିବ । ଦୂର ଅତୀତର ସେହି ନୌବାଣିଜ୍ୟ ପରମ୍ପରା ଓଡିଶାର ଭାବଧାରା, ଇତିହାସ କିମ୍ବଦନ୍ତୀ ଓ ସଂସ୍କୃତିର ବିଜୟ ବୈଜୟନ୍ତୀ ଉଡାଇ ଚାଲିଥିବ । ସୁଦୂର ଅତୀତର ସୁସମୃଦ୍ଧ କଳିଙ୍ଗର ଦୁଃସାହସିକ ସାଧବ ପୁଅର ଉତ୍ତାଳ ସମୁଦ୍ର ବକ୍ଷରେ ବିଶ୍ୱ ବିସ୍ମୟ ନୌବାଣିଜ୍ୟିକ ଯାତ୍ରା ସହ ଦରିଆ ପାରି ବିଦେଶ ମାଟିରେ ବାଣିଜ୍ୟ କରି କଳିଙ୍ଗର ସମୃଦ୍ଧିରେ ବିଶେଷ ସହାୟତା ଓ ସେଠାରେ ନିଜ ସଂସ୍କୃତିର ପ୍ରଚାର ପ୍ରସାରର ସ୍ମୃତିଚାରଣ, ବର୍ତ୍ତମାନ ଓ ଆଗାମୀ ପିଢି ନିମନ୍ତେ ପ୍ରେରଣା ।

ଉତ୍କଳୀୟ ନୌବାଣିଜ୍ୟ ପରମ୍ପରା ଆଜି ଏକ କିମ୍ବଦନ୍ତୀ । ସାଧବ ପୁଅମାନେ ଆଉ ପାଲଟଣା ବୋଇତ ନେଇ ଅଥଳ ସମୁଦ୍ରରେ ଜାଭା, ସୁମାତ୍ରା, ବୋର୍ଣ୍ଣିଓ, ବାଲି, ଚୀନ୍, ଜାପାନ, ରୋମ୍, ସିଂହଳ ଏବଂ ଦକ୍ଷିଣ ପୂର୍ବ ଏସିଆକୁ ବାଣିଜ୍ୟ କରିବାକୁ ଯାଉ ନାହାନ୍ତି । ଆଜି ସେ ବୋଇତ ନାହିଁ ଓ ସାଧବପୁଅ ମଧ୍ୟ ଦେଖିବାକୁ ମିଳୁନାହିଁ ସେହି ଅଦମ୍ୟ ସାହସ । ଅଛି କେବଳ ସାଂସ୍କୃତିକ କାର୍ଯ୍ୟକ୍ରମରେ ସ୍ମୃତିର ମହକ । କିନ୍ତୁ ଦିନେ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ କଳିଙ୍ଗ ସାମ୍ରାଜ୍ୟ ବିସ୍ତାର ଲାଭ କରିଥିଲା । ଖ୍ରୀଷ୍ଟପୂର୍ବ ୩୫୦ ରୁ ୪୦୦ ପର୍ଯ୍ୟନ୍ତ ଏହି ନୌବାଣିଜ୍ୟ ପରମ୍ପରା ପିପିଲି, କୋଣାର୍କ, ଚାନ୍ଦବାଲି, ଧାମରା, ମାଣିକ ପାଟଣା, ପାଲୁର୍, ଚେରିତୋଳ, ଚିଲିକା, ଗଂଜାମ ବନ୍ଦର ଦେଇ ମହାନଦୀ, ବୈତରଣୀ, ଋଷିକୂଲ୍ୟା, ବ୍ରାହ୍ମଣୀ ନଦୀ ଓ ବଙ୍ଗୋପସାଗର ଦେଇ ଭାରତ ମହାସାଗରର ମହାସ୍ରୋତରେ ଅନ୍ତର୍ଜାତୀୟ ସୁଖ୍ୟାତି ଆଣୁଥିଲେ । ପବନର ଗତିକୁ ଲକ୍ଷ୍ୟକରି ସିଂହଳ ଦେଇ କଳିଙ୍ଗକୁ ଧନ ଦୌଲତ ସାଙ୍ଗରେ ଧରି ଫେରିଆସୁଥିଲେ । ଦ୍ୱିତୀୟ ଶତାବ୍ଦୀରୁ ପଞ୍ଚମ ଶତାବ୍ଦୀ ପର୍ଯ୍ୟନ୍ତ ପ୍ରାୟ ୪ଶହ ବର୍ଷ ଧରି ଏହି ନୌବାଣିଜ୍ୟ ପରମ୍ପରା ସୁଖ୍ୟାତି ଅର୍ଜନ କରିଥିଲା ବୋଲି

ଟୋଲେମି ଜିଓଗ୍ରାଫି ଅଫ୍ ଆନସିଏଣ୍ଟ ଇଣ୍ଡିଆ ଓ ପର୍ସିଆନ ଐତିହାସିକ ଇବନ୍ ଖୁର୍ଦ୍ଦିବିନ୍ ଏବଂ ଇବନ୍ ରାସ୍ତାଙ୍କ ପୁସ୍ତକ ବର୍ଣ୍ଣନାରୁ ଜଣାଯାଏ । ନବମ ଓ ଦଶମ ଶତାବ୍ଦୀରେ ଭୌମକର ରାଜବଂଶର ରାଜତ୍ୱ କାଳରେ କଳିଙ୍ଗରେ ବନ୍ଦର ଗୁଡିକର ପ୍ରାଧାନ୍ୟତା ଥିଲା । ପଂଚଦଶ ଶତାବ୍ଦୀରେ ବାଲେଶ୍ୱର, ଗଂଜାମ, ଚାନ୍ଦବାଲି ଓ ଧାମରା ବନ୍ଦରକୁ ନୌବାଣିଜ୍ୟ ପାଇଁ ବ୍ୟାପକ ବ୍ୟବହାର କରାଯାଉଥିଲା । କାଳି ଦାସଙ୍କ ରଘୁବଂଶ ଓ ଶଙ୍ଖ ଜାତକ, ସମୁଦ୍ର ଜାତକ, ମହାଜନ ଜାତକରେ ଦର୍ଶାଯାଇଛି ଯେ, ପ୍ରାଚୀନ କାଳରେ ଭାରତରୁ ବହୁ ସାମଗ୍ରୀ ବନାରସ ଦେଇ ତାମ୍ରଲିପ୍ତି ଦେଇ ଦକ୍ଷିଣ ପୂର୍ବ ଏସିଆକୁ ପଠାଇଥିଲେ । ପ୍ରାଚୀନ ଯୁଗରେ କଳିଙ୍ଗ ଏକମାତ୍ର ରାଜ୍ୟ, ଯାହା ବିଶ୍ୱର ପେଣ୍ଠସ୍ଥଳୀ ଥିଲା । କୋଣାର୍କ ମନ୍ଦିରରେ ପଥର ଖୋଦେଇ ଜିରାଫ୍ ହିଁ ପ୍ରମାଣିତ କରେ ଯେ, ଆଫ୍ରିକା ସହ ଓଡିଶାର ବାଣିଜ୍ୟ କାରବାର ରହିଥିଲା । ଆଣ୍ଡାମାନ ଓ ନିକୋବର ଦ୍ୱୀପପୁଂଜ ଦେଇ ଓଡିଆ ସାଧବପୁଅ ବହୁ ପାଶ୍ଚାତ ଦେଶ ସହ ବାଣିଜ୍ୟିକ ଓ ସାଂସ୍କୃତିକ ସମ୍ପର୍କ ରକ୍ଷା କରୁଥିଲେ । ଏବେ ଜାହାଜ ଯୁଗରେ ଓଡିଶା ସେ ହୃତଗୌରବ ଫେରାଇ ଆଣିବା ପାଇଁ ପାରାଦ୍ୱୀପ ଓ ଧାମରା ବନ୍ଦର ମାଧ୍ୟମରେ ଉଦ୍ୟମ କରୁଛି ।

ଚିର ହାସ୍ୟମୟୀ, ଲାସ୍ୟମୟୀ ଉତ୍କଳ ଜନନୀ ହେଉଛି ପ୍ରକୃତିର ଗନ୍ତାଘର । ବକୁଳ ମୁକୁଳ ବନାନୀ ପରିଶୋଭିତ କାନନମାଳା, ପୁଣ୍ୟତୋୟା ସ୍ରୋତସ୍ୱିନୀ ବିଧୌତି ପରି ଶୋଭିତ ଶୋଭା ସୌନ୍ଦର୍ଯ୍ୟର ନୀଳ ଜଳରାଶି । ସୁନ୍ଦର ବନ ସୁଶୋଭିତ ଭୂଧରମାଳା,ଘନଘନ ବନଭୂମି, ତାଳତମାଳ ପୂର୍ଣ୍ଣ ଋତୁରାଜି, କଳକଳ ମୁଖରିତ ଚାରୁ ବିହଙ୍ଗ ଆଦିଙ୍କ ମଧ୍ୟରେ ଝଲସି ଉଠେ ଐତିହ୍ୟମୟୀ, ଗୌରବମୟୀ କୀର୍ତ୍ତି ଉତ୍କଳ ଜନନୀଙ୍କର ଭୂମଣ୍ଡଳ । ଏଠାରେ ପ୍ରତିଟି ଜ୍ଞାନ ବିଜ୍ଞାନରେ ପ୍ରଦର୍ଶନରେ ଉଦଭାସିତ ହୋଇଥାଏ ନୌବାଣିଜ୍ୟର ମିଠାମିଠା ମହକ । ଉତ୍କଳ ମାତାଙ୍କ ନୟନ, କବିକୁଳ ତଥା ଗୁଣିବର ପୂର୍ଣ୍ଣତୀର୍ଥ ତଥା ବହୁ ମୁନିଋଷିଙ୍କ ମନ୍ତ୍ରଧ୍ୱନିରେ ପବିତ୍ର ହୁଏ ଏହି ମାତାଙ୍କ କଳେବର । ତେଣୁ ଏହି ଭୂମିଭୂମା ଚିର ଧନ୍ୟା, ଚିର ପୂଣ୍ୟା । ସର୍ବଦା ଶରଣଦାତ୍ରୀ କୋଳରେ ବହୁ ଐତିହ୍ୟର ବିସ୍ମୟକର ସ୍ମାରକୀ କଳିଙ୍ଗ–ଉତ୍କଳ–ଓଡିଶା ମାଟିକୁ ବିଶ୍ୱ ଦରବାରରେ ଶୀର୍ଷ ସ୍ଥାନରେ ପହଁଚାଇ ପାରିଛି । ଆଜି ସେହି ପବିତ୍ର ମାଟିରେ ଉତ୍କଳୀୟ ନୌବାଣିଜ୍ୟର ଅବସ୍ମରଣୀୟ କଳିଙ୍ଗ ବାଲିଯାତ୍ରା ଅନେକ ଅନନ୍ୟ ବର୍ଣ୍ଣାଢ୍ୟ ସୁବର୍ଣ୍ଣ ଐତିହାସିକ ଐତିହ୍ୟର ସ୍ମରଣୀୟ ମହକ ଏହି ମହୋତ୍ସବ ।

ସମ୍ପାଦକ, ଗୋପବନ୍ଧୁ ସାହିତ୍ୟ ସଂସଦ
ଚାନ୍ଦବାଲି, ଭଦ୍ରକ

❖ ❖ ❖

# ଆମ ସଂସ୍କୃତି ଓ ପରମ୍ପରାରେ ଦୀପାବଳି ପର୍ବ

**କବିତା ଦେବୀ**

ଆମ ଦେଶର ସାଂସ୍କୃତିକ ଜୀବନ କ୍ଷେତ୍ରରେ ପର୍ବ ବା ଉତ୍ସବର ମହତ୍ତ୍ୱପୂର୍ଣ୍ଣ ସ୍ଥାନ ରହିଛି । ସାଧାରଣତଃ ଉତ୍ସବ ଗୁଡ଼ିକୁ ସାମାଜିକ ଜୀବନକୁ ନୂତନ ଉତ୍ସାହ ଉଦ୍ଦୀପନା, ଜାଗୃତି ଓ ଚେତନା ପ୍ରଦାନ କରିଥାନ୍ତି । ଆମ ସଂସ୍କୃତି ପରମ୍ପରା ଅନୁଯାୟୀ ପ୍ରେରଣାଦାୟକ ପର୍ବମାନଙ୍କ ପରି ଦୀପାବଳି ହିନ୍ଦୁମାନଙ୍କର ଏକ ପ୍ରମୁଖ ପର୍ବ ଅଟେ । ଏହା ଆଲୋକର ଉତ୍ସବ ତ୍ୟାଗ, ସଂଗଠନ ଓ ପବିତ୍ର ଭାବର ସନ୍ଦେଶ ପ୍ରଦାନ କରେ ତଥା ସାମାଜିକ ଜୀବନକୁ ସୁଦୃଢ଼, ସୁସଂହତ ମଧୁମୟ କରିଥାଏ । ତେଣୁ ଏହି ଆନନ୍ଦ ଓ ଆଲୋକର ପର୍ବକୁ 'ଆଲୋକ ଆଗମନ ଦିବସ' କୁହାଯାଏ ।

ଦୀପାବଳିର ଅର୍ଥ ଦୀପମାନଙ୍କର ପଙ୍‌କ୍ତି ବା ଶ୍ରେଣୀ । ଦୀପାବଳୀ ଉତ୍ସବରେ ସଜ୍ଜିତ ଜ୍ୱଳନ୍ତ ଦୀପମାନଙ୍କର ଧାଡ଼ି ଅତ୍ୟନ୍ତ ଆକର୍ଷଣୀୟ, ଶୋଭନୀୟ ଓ ପ୍ରାଚୁର୍ଯ୍ୟର ପ୍ରତୀକ ଅଟେ । ଏହି ଦିବସଟି ଅତ୍ୟନ୍ତ ପବିତ୍ର । ଅମାବାସ୍ୟାର ପବିତ୍ରତା ଖୁବ୍ ମହାନ୍ । ଏହି ଦିନ ସମସ୍ତେ ଘରେ ଓ ମନ୍ଦିରରେ ପିତୃଶ୍ରାଦ୍ଧ ଦେଇଥାନ୍ତି । ଶ୍ରୀକ୍ଷେତ୍ର ଏକ ପ୍ରଧାନ ପିତୃତୀର୍ଥ ସ୍ଥାନ ଅଟେ । ଶ୍ରୀମନ୍ଦିରର ବାଇଶିପାହାଚରେ ପିତୃଶ୍ରାଦ୍ଧ, ତିଳତର୍ପଣ ଅର୍ପଣ କରି ପିତୃପୁରୁଷଙ୍କୁ ଆବାହନ କରି ପିଣ୍ଡଦାନ କରିଥାନ୍ତି । ପିଣ୍ଡଦାନ ପରେ କାଉଁରିଆ କାଠିରେ ଆଲୋକ ଦେଖାଇ କହିଥାନ୍ତି ।

ହେ ପିତୃଲୋକେ ଆଶ୍ୱିନ ମାସ ମହାଳୟାରେ ଆଗମନ କରିଥିଲେ । ଦିବ୍ୟ ଆଲୋକରେ ଆଜିର ଏହି ପବିତ୍ର ଦିବସରେ ପିତୃଲୋକକୁ ଗମନ କରନ୍ତୁ । ପୁନର୍ବାର ପିତୃପୁରୁଷଙ୍କୁ ସ୍ନେହ ଶ୍ରଦ୍ଧା ସ୍ୱରୂପ ଏହି ଦିବସରେ ଦୀପଦାନ କରି ତାଙ୍କଠାରୁ ଆଶିଷ ଲାଭ କରିଥାନ୍ତି ଏବଂ ଆଲୋକବର୍ତ୍ତିକା ଧରି ଡାକିଥାନ୍ତି ।

ପିତୃଶ୍ରାଦ୍ଧ ଏବଂ ବଡବଡୁଆଙ୍କୁ ଦୀପାପଳି ଦିନ ଡକା ଯାଇଥିବାରୁ, ଏହାକୁ ବଡବଡୁଆ ଅମାବାସ୍ୟା କହନ୍ତି ।

ଦୀପାବଳି ଉତ୍ସବ ପାଳନର କେତେକ କିମ୍ବଦନ୍ତୀ, ପୌରାଣିକ ଓ ଐତିହାସିକ ପୃଷ୍ଠଭୂମି ରହିଛି । ପ୍ରଜାନୁରଂଜନ ଶ୍ରୀରାମଚନ୍ଦ୍ର ଚଉଦବର୍ଷ ବନବାସ ପରେ, ଦୁଷ୍ଟ ରାବଣକୁ ବିନାଶ କରି ଅଯୋଧ୍ୟାକୁ ପ୍ରତ୍ୟାଗମନ କରିଥିଲେ । ଭ୍ରାତୃଭକ୍ତ ଭରତଙ୍କ ସହ ଅଯୋଧ୍ୟାବାସୀ ଏହିଦିନ ଦ୍ୱାରେ ଦ୍ୱାରେ ଘୃତ ଦୀପ ଜାଳି ଲକ୍ଷ୍ମଣ ଓ ସୀତାଙ୍କ ସହ ରାମଚନ୍ଦ୍ରଙ୍କୁ ସ୍ୱାଗତ କରିଥିଲେ । ଏହି ଭବ୍ୟ ସମ୍ବର୍ଦ୍ଧନାର ସ୍ମାରକୀ ହେଉଛି ଦୀପାବଳି ପର୍ବ ।

ଅନ୍ୟ ପୌରାଣିକ କାହାଣୀ ଅନୁସାରେ, ଦ୍ୱାପର ଯୁଗରେ ଭଗବାନ ଶ୍ରୀକୃଷ୍ଣ କାର୍ତ୍ତିକ ଅମାବାସ୍ୟା ଦିନ ତାରକାସୁରକୁ ବଧ କରି ଷୋଳ ସହସ୍ର ଗୋପନାରୀଙ୍କୁ ଉଦ୍ଧାର କରିଥିଲେ । ଗୋପାଙ୍ଗନାମାନେ ଏହି ଦିନକୁ ବିଜୟ ଉତ୍ସବ ରୂପେ ପାଳନ କରିଥିଲେ । ଆଲୋକ ବର୍ତ୍ତିକାରେ ସମଗ୍ର ନଗରୀ କୋଳାହଳମୟ ହୋଇ ଉଠିଥିଲା । ଦୀପର ପ୍ରଜ୍ୱଳନରେ ସମସ୍ତେ ଉଲ୍ଲସିତ ହୋଇଥିଲେ । ପୁନର୍ବାର ଇନ୍ଦ୍ରରାଜାଙ୍କ କୋପରୁ ଗୋପପୁରବାସୀଙ୍କୁ ରକ୍ଷା କରିବା ପାଇଁ ଶ୍ରୀକୃଷ୍ଣ ଗିରିଗୋବର୍ଦ୍ଧନ ଧାରଣ କରିଥିଲେ । ଏହିଦିନ ଗୋପପୁରବାସୀ ଦୀପ ଲଗାଇ ଉତ୍ସବ ପାଳନ କରିଥିଲେ ।

କିମ୍ବଦନ୍ତୀ କହେ, ଦୀପାବଳି ଉତ୍ସବ ସହିତ ଲକ୍ଷ୍ମୀପୂଜନ ସଂଶ୍ଲିଷ୍ଟ । ସମୁଦ୍ର ମନ୍ଥନରୁ ଲକ୍ଷ୍ମୀ ଏହି କାର୍ତ୍ତିକ ଅମାବାସ୍ୟା ଦିନ ସଂଭୂତା ହୋଇଥିଲେ । ପୁଣି ସପ୍ତ ପାତାଳରେ ବଳିରାଜାଙ୍କ ଦ୍ୱାରା ବନ୍ଦିନୀ ଲକ୍ଷ୍ମୀ ଏହିଦିନ ଅନ୍ୟ ଦେବତା ମାନଙ୍କ ସହ ବାମନଙ୍କ ଅନୁଗ୍ରହରୁ ମୁକ୍ତିଲାଭ କରିଥିଲେ । ଲକ୍ଷ୍ମୀ ମୁକ୍ତି ଦିବସରେ ଜନସାଧାରଣ ଦୀପାବଳି ପ୍ରଜ୍ୱଳନ କରି ଧନବୃଦ୍ଧି ହେବା ପାଇଁ ବିଭିନ୍ନ ଦୋକାନ ମାନଙ୍କରେ ମା' ଧନଲକ୍ଷ୍ମୀ ଏବଂ କୁବେରଙ୍କୁ ପୂଜା ଅର୍ଚ୍ଚନା କରିଥାନ୍ତି । ଉତ୍ତରପ୍ରଦେଶ, ରାଜସ୍ଥାନ ସହିତ ମୁଖ୍ୟତଃ ମାର୍‌ୱାଡ଼ିମାନେ ଦୀପାବଳି ପର୍ବକୁ ଧନ୍‌ତେରାସ୍ ରୂପେ ପାଳନ କରିଥାନ୍ତି ।

ପୌରାଣିକ କଥନିକା ବ୍ୟତୀତ ଏ ସଂପର୍କରେ କିଛି ଐତିହାସିକ ତଥ୍ୟ ରହିଛି । ଜୈନଧର୍ମର ଚତୁର୍ବିଂଶ ତୀର୍ଥଙ୍କର ମହାବୀର ଏହିଦିନ ନିର୍ବାଣ ପ୍ରାପ୍ତ ହୋଇଥିଲେ । ସେମାନେ ମଧ୍ୟ ପ୍ରଦୀପ ପ୍ରଜ୍ୱଳନ କରି ଏହି ପର୍ବ ପାଳନ କରନ୍ତି । ପବିତ୍ର ଦୀପାବଳି ଦିନ ଶଙ୍କରାଚାର୍ଯ୍ୟ ମୃତ ଦେହରେ ପ୍ରବେଶ କରି ପୁନର୍ଜୀବନ ଲାଭ କରିଥିଲେ । ଆଲୋକର ପର୍ବ ପାଳନ କରି ତାଙ୍କ ଶିଷ୍ୟମାନେ ଆନନ୍ଦରେ ନାଚି ଉଠି ଆତସବାଜି ଫୁଟାଇଥିଲେ । ମୋଗଲ ସମ୍ରାଟ୍ ଆକବର ଦୀପାବଳି ଉତ୍ସବ ଆନନ୍ଦ ମନରେ ପାଳନ କରୁଥିଲେ । ବିକ୍ରମାଦିତ୍ୟ ଦୀପାବଳି ଉତ୍ସବ ଦିନ ସିଂହାସନ ଆରୋହଣ କରିଥିଲେ । ସେହିଦିନ ରାଜପରିଷଦମାନେ ଖୁସି ଆନନ୍ଦରେ ଏହି ପର୍ବ ପାଳନ କରିଥିଲେ । ସମ୍ରାଟ ହର୍ଷବର୍ଦ୍ଧନ ତାଙ୍କ ଗ୍ରନ୍ଥ 'ନାଗାନନ୍ଦ' ନାଟକରେ ଦୀପାବଳିକୁ 'ଦୀପ ପ୍ରତି ପଦୁତ୍ସବ' ଭାବେ ଅଭିହିତ କରିଛନ୍ତି । ଦୀପାବଳି ସହିତ ଆମ ଦେଶର ଅନେକ ମହତ୍ତ୍ୱପୂର୍ଣ୍ଣ ଘଟଣାମାନ ରହିଛି । ଶିଖ୍‌ମାନଙ୍କ ଷଷ୍ଠଗୁରୁ ହରଗୋବିନ୍ଦ ସିଂ ଆଉରଙ୍ଗ୍‌ଜେବ କାରାଗାରରୁ ଏହିଦିନ ମୁକ୍ତିଲାଭ କରିଥିଲେ । ତେଣୁ ଏହି ଦିନକୁ ସ୍ମରଣ କରି ଶିଖ୍‌ମାନେ ଦୀପାବଳି ପର୍ବ ମହା ଆଡମ୍ବରରେ ପାଳନ କରିଥାନ୍ତି ।

ଦୀପାବଳି ଭାରତୀୟ କୃଷକ ସମାଜ ପାଇଁ ଏକ ସୁ ସମୃଦ୍ଧ ନବଜୀବନର ବାର୍ତ୍ତା ଆଣିଥାଏ । ବର୍ଷାର ସମାପ୍ତି ପରେ କୃଷକମାନେ କାର୍ଯ୍ୟମୁକ୍ତ ହୋଇଥାନ୍ତି । ନୂତନ ଶସ୍ୟ ସମ୍ଭାର କୃଷକର ପ୍ରାଣରେ ଅଫୁରନ୍ତ ଆନନ୍ଦ ସୃଷ୍ଟି କରେ । ଦୀପାବଳି ପର୍ବ ପାଳନ ପାଇଁ ସମସ୍ତେ ତତ୍ପର ହୁଅନ୍ତି । ଓଡିଶା ସହିତ ସମଗ୍ର ଦେଶର ଗଳିକନ୍ଦିରେ ବହୁ ଆଡମ୍ବରରେ ଦୀପାବଳି ପର୍ବ ପାଳନ କରାଯାଏ । କଲିକତା ଏବଂ ବିଭିନ୍ନ ସ୍ଥାନରେ କାଳୀପୂଜା ଖୁବ୍ ଆଡମ୍ବର ସହକାରେ ହୋଇଥାଏ ।

ଦୀପାବଳି ଉତ୍ସବ ଦିନ ଘରେ ଘରେ ପିଠାପଣା ସହିତ ମିଠା ପ୍ରଭୃତି ପ୍ରସ୍ତୁତ କରାଯାଇଥାଏ । ନୂଆ ବସ୍ତ୍ର ପରିଧାନ କରି ପୂଜାକାର୍ଯ୍ୟ ସମାପନ ପରେ ରାତ୍ରିର ଆଲୋକସଜ୍ଜା ଶୋଭନୀୟ ଏବଂ ଆକର୍ଷଣୀୟ ହୋଇଥାଏ । ପ୍ରତି ଦ୍ୱାରରେ ଓ ପ୍ରାସାଦରେ ଦୀପାଳି ଜଳିଉଠି ଅପୂର୍ବ ଶୋଭା ଧାରଣ କରେ । ବିଜୁଳି ଆଲୋକର ସାଜସଜ୍ଜା ଅତୀବ ଦର୍ଶନୀୟ ଅଟେ । ଦୀପାବଳି ସହିତ ଆତସବାଜି ଏକ ନିଆରା ପରମ୍ପରା ଅଟେ । ବିଭିନ୍ନ ପ୍ରକାର ବାଣ ଫୁଟାଇ ଆବାଳ ବୃଦ୍ଧବନିତା ସମସ୍ତେ ଆତ୍ମସନ୍ତୋଷ ଲାଭ କରନ୍ତି ।

ଏପରି ଆନନ୍ଦ ପ୍ରଦାନ କରୁଥିବା ଦୀପାବଳି ପର୍ବ ଗୋଟିଏ ଧର୍ମ, ଗୋଷ୍ଠୀ ବା ସମ୍ପ୍ରଦାୟ ମଧ୍ୟରେ ସୀମିତ ହୋଇ ରହିନାହିଁ । ଏହା ସାର୍ବଜନୀନ ଅଟେ । ଆମର ସାଂସ୍କୃତିକ ପରମ୍ପରା ପ୍ରାଚୀନ ମୂଲ୍ୟବୋଧକୁ ଋଦ୍ଧିମନ୍ତ କରିଛି ଏହି ଦୀପାବଳି ପର୍ବ । ଆଲୋକ, ଆତସବାଜି, ଆନନ୍ଦ ଉତ୍ସବରେ ଓ ପରସ୍ପର ପ୍ରତି ସ୍ନେହ, ମମତା ଭାଇଚାରା ମନବୃତ୍ତି ଭରି ଦେଇଥାଏ ।

ଅବସରପ୍ରାପ୍ତ ଶିକ୍ଷୟିତ୍ରୀ
ନୀଳାଦ୍ରି ବିହାର, ଭୁବନେଶ୍ୱର-୨୧

❖ ❖ ❖

# ଭାରତର ଚନ୍ଦ୍ର ଅଭିଯାନ

ଇଂ. ମାୟାଧର ସ୍ୱାଇଁ

ଚନ୍ଦ୍ର ହେଉଛି ପୃଥିବୀର ଗୋଟିଏ ଉପଗ୍ରହ । ଏହା ହେଉଛି ପୃଥିବୀର ନିକଟତମ ଜ୍ୟୋତିର୍ବିଦୀୟ ପିଣ୍ଡ । ପୃଥିବୀଠାରୁ ଏହାର ହାରାହାରି ଦୂରତା ହେଉଛି ୩୮୫୦୦୦ କି.ମି. । ଏହା ୨୭ ଦିନରେ ଥରେ ପୃଥିବୀ ଚାରିପଟେ ଘୂରିଆସେ । କାହିଁ କେଉଁ ଅନାଦି କାଳରୁ ମନୁଷ୍ୟ ଆକାଶରେ ଚନ୍ଦ୍ର ଓ ସୂର୍ଯ୍ୟକୁ ଦେଖି ଆସୁଛି ଏବଂ ଏଗୁଡ଼ିକ ବିଷୟରେ କେତେକ କାଳ୍ପନିକ କାହାଣୀ ସୃଷ୍ଟି କରିଛି । ଚନ୍ଦ୍ରକୁ ଆମେ 'ଜହ୍ନମାମୁ' କହିଥାଉ । କାରଣ ଭାରତୀୟ ପୁରାଣ ଅନୁସାରେ ଦେବତା ଓ ଅସୁରମାନେ ସାଗର ମନ୍ଥନ କରିବା ସମୟରେ ସମୁଦ୍ରରୁ ଲକ୍ଷ୍ମୀ ଓ ଚନ୍ଦ୍ର ବାହାରି ଥିଲେ । ଭଗବାନ ବିଷ୍ଣୁଙ୍କୁ ଲକ୍ଷ୍ମୀ ବିବାହ କଲେ ଏବଂ ତାଙ୍କୁ ଜଗତର ମାତା କୁହାଗଲା । ଲକ୍ଷ୍ମୀ ଓ ଚନ୍ଦ୍ର ସମୁଦ୍ରରୁ ଏକ ସମୟରେ ବାହାରିଥିବାରୁ ଏବଂ ଲକ୍ଷ୍ମୀ ଆମର ମାତା ହେବାରୁ ଚନ୍ଦ୍ର ଆମର ମାମୁ ହେଲେ । ଚନ୍ଦ୍ରକୁ ନେଇ କବି ଅନେକ କବିତା ଲେଖିଛନ୍ତି । ଚନ୍ଦ୍ରର ଶୀତଳ ଆଲୋକ ଆମ ମନରେ ପୁଲକ ଆଣିଦିଏ । ବାସ୍ତବରେ ଚନ୍ଦ୍ରର ନିଜର ଆଲୋକ ନାହିଁ । ଏହା ସୂର୍ଯ୍ୟର ଆଲୋକକୁ ପ୍ରତିଫଳନ କରୁଥିବାରୁ ଏହି ଆଲୋକ ହେଉଛି ଶୀତଳ ।

ଚନ୍ଦ୍ରପୃଷ୍ଠକୁ ଯିବା ପାଇଁ ମନୁଷ୍ୟ ଅନେକ ଦିନରୁ କଳ୍ପନା କରିଛି । ଏହାକୁ ନେଇ ଅନେକ ବିଜ୍ଞାନ ଗପ ଓ ଉପନ୍ୟାସ ଲେଖାଯାଇଛି । ଗତ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ମହାକାଶ ଅଭିଯାନ ଆରମ୍ଭ ହେବା ପରେ ମନୁଷ୍ୟର ସେହି ସ୍ୱପ୍ନ ପୂରଣ ହେଲା । ୧୯୬୯ ମସିହା ଜୁଲାଇ ୨୦ ତାରିଖରେ ଯୁକ୍ତରାଷ୍ଟ୍ର ଆମେରିକାର ଦୁଇଜଣ ମହାକାଶଚାରୀ ନିଲ୍ ଆର୍ମଷ୍ଟ୍ରଙ୍ଗ ଓ ଏଡ଼ୱଇନ୍ ଆଲଡ୍ରିନ୍ ପ୍ରଥମେ ଚନ୍ଦ୍ରପୃଷ୍ଠରେ ପାଦ ଦେଇ ଇତିହାସ ସୃଷ୍ଟି କଲେ । ଆମେରିକାର ମୋଟ୍ ବାର ଜଣ ମହାକାଶଚାରୀ ଛଅ ଥରରେ ଚନ୍ଦ୍ରପୃଷ୍ଠକୁ ଯାଇ ସେଠାରେ ବିଭିନ୍ନ ପରୀକ୍ଷା କରିବା ସହ ସେଠାରୁ ମୃତ୍ତିକା ନେଇ ଫେରିଛନ୍ତି । ଶେଷ ମହାକାଶଚାରୀଦ୍ୱୟ ୧୯୭୨ ମସିହା ଡିସେମ୍ବର ମାସରେ ସେଠାକୁ ଯାଇଥିଲେ । ଏହାପରେ ଚନ୍ଦ୍ର ଅଭିଯାନ ବନ୍ଦ ହୋଇଯାଇଥିଲା । ମାତ୍ର ଏହି ଶତାବ୍ଦୀର ଆରମ୍ଭରେ ପୁଣି ଚନ୍ଦ୍ର ଅଭିଯାନ ପାଇଁ ବିଭିନ୍ନ ଦେଶରେ ଆଗ୍ରହ ସୃଷ୍ଟି ହେଲା ଏବଂ କେତେକ ଦେଶ ଚନ୍ଦ୍ର କକ୍ଷକୁ ଓ ପୃଷ୍ଠକୁ ଯାନ ପଠାଇଛନ୍ତି । ଏହି ଦେଶଗୁଡ଼ିକ ମଧ୍ୟରେ ଆମ ଦେଶ ଭାରତ ପ୍ରମୁଖ ଭୂମିକା ନେଇଛି ।

ପୂର୍ବର ସୋଭିଏତ୍ ରୁଷ୍ ୧୯୫୭ ମସିହା ଅକ୍ଟୋବର ଚାରି ତାରିଖରେ ପ୍ରଥମ କୃତ୍ରିମ ଉପଗ୍ରହ ସ୍ପୁଟନିକ-୧କୁ ଭୂକକ୍ଷକୁ ପଠାଇବା ପରେ ରୁଷ ଓ ଆମେରିକା ମଧ୍ୟରେ ମହାକାଶ ଅଭିଯାନ ପ୍ରତିଯୋଗିତା ଚାଲିଲା । ଭାରତ ମଧ୍ୟ ଏଥିରେ ପଛାଇ ନାହିଁ । ବିକ୍ରମ ସରାଭାଇଙ୍କ ଉଦ୍ୟମ ଓ ନେତୃତ୍ୱରେ ଭାରତରେ ୧୯୬୩ ମସିହାରୁ ମହାକାଶ ଗବେଷଣା କାର୍ଯ୍ୟକ୍ରମ ଆରମ୍ଭ ହୋଇଛି । ଏହି କାର୍ଯ୍ୟକ୍ରମ ସଞ୍ଚାଳନ କରୁଛି ଭାରତୀୟ ମହାକାଶ ଗବେଷଣା ସଂସ୍ଥା (ଇସ୍ରୋ) । ଏହା ମହାକଶକୁ ନିଜସ୍ୱ କୃତ୍ରିମ ଉପଗ୍ରହ

ପଠାଇବା ସହିତ ଚନ୍ଦ୍ର ଓ ମଙ୍ଗଳ କକ୍ଷକୁ ମହାକାଶ ଯାନ ପଠାଇଛି ।

ଭାରତ ୨୦୦୮ ଅକ୍ଟୋବର ମାସରେ ଚନ୍ଦ୍ରଯାନ-୧ ଅଭିଯାନ ପଠାଇଥିଲା ଏବଂ ଏହା ୨୦୦୯ ମସିହା ଅଗଷ୍ଟ ମାସ ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲା । ଏହି ଅଭିଯାନରେ ଗୋଟିଏ ଅର୍ବିଟର ଓ ଗୋଟିଏ ସଂଘାତକ (ଇମ୍ପାକ୍ଟର) ଥିଲା । ସଂଘାତକ ମୂଳଯାନରୁ ଅଲଗା ହୋଇ ନିୟନ୍ତ୍ରିତ ଉପାୟରେ ଚନ୍ଦ୍ରର ଦକ୍ଷିଣମେରୁ ଅଞ୍ଚଳରେ ପଡ଼ିଥିଲା । ଏହି ସ୍ଥାନର ନାମ 'ଜବାହର ବିନ୍ଦୁ' ରଖାଯାଇଛି । ଏହି ଅଭିଯାନରେ ଚନ୍ଦ୍ରଯାନ-୧ରେ ଥିବା ଯନ୍ତ୍ରପାତି ସାହାଯ୍ୟରେ ଚନ୍ଦ୍ରପୃଷ୍ଠରେ ଜଳ ଥିବାର ପ୍ରଥମ ପ୍ରମାଣ ମିଳିଥିଲା ।

ଭାରତର ଚନ୍ଦ୍ରଯାନ-୨ ଅଭିଯାନ ୨୦୧୯ ମସିହା ଜୁଲାଇ ୨୨ ତାରିଖରେ ଉତ୍‌କ୍ଷେପଣ ହୋଇଥିଲା । ଏଥିରେ ଗୋଟିଏ ଅର୍ବିଟର, ଗୋଟିଏ ଲ୍ୟାଣ୍ଡର ଓ ଗୋଟିଏ ରୋଭର ଥିଲା । ଲ୍ୟାଣ୍ଡର ନାମ ଭାରତୀୟ ମହାକାଶ କାର୍ଯ୍ୟକ୍ରମର ଜନକ ବିକ୍ରମ ସରାଭାଇଙ୍କ ନାମାନୁସାରେ 'ବିକ୍ରମ' ଏବଂ ରୋଭର ନାମ 'ପ୍ରଜ୍ଞା' ରଖାଯାଇଥିଲା । ସେହିବର୍ଷ ସେପ୍ଟେମ୍ବର ୬ ତାରିଖରେ ଲ୍ୟାଣ୍ଡର ଓ ରୋଭର ମୂଳଯାନରୁ ପୃଥକ୍ ହୋଇ ଚନ୍ଦ୍ରପୃଷ୍ଠରେ ଅବତରଣ କରିବା ବେଳେ ସଫ୍ଟଲ୍ୟାଣ୍ଡିଙ୍ଗ୍ ହୋଇ ନ ପାରି ଜୋର୍‌ରେ ଧକ୍କା ହେଲା । ଫଳରେ ଏହି ଦୁଇଟି ଅକାମୀ ହୋଇଗଲା । କିନ୍ତୁ ଏହି ଅଭିଯାନର ଅର୍ବିଟର ଚନ୍ଦ୍ର କକ୍ଷରେ ରହି ଏ ପର୍ଯ୍ୟନ୍ତ କାର୍ଯ୍ୟ କରୁଛି । ଏହି ଅଭିଯାନ ୯୦ ପ୍ରତିଶତ ସଫଳ ହୋଇଥିଲା ।

ଇସ୍ରୋ ୨୦୨୩ ମସିହା ଜୁଲାଇ ୧୪ ତାରିଖରେ ଆନ୍ଧ୍ରପ୍ରଦେଶର ଶ୍ରୀହରିକୋଟା ଉତ୍‌କ୍ଷେପଣ ଘାଟିରୁ ଏଲ୍‌ଭିଏମ୍-୩ ରକେଟ୍ ସାହାଯ୍ୟରେ ଚନ୍ଦ୍ର ଅଭିମୁଖେ ଚନ୍ଦ୍ରଯାନ-୩କୁ ଉତ୍‌କ୍ଷେପଣ କରିଥିଲା । ଏହାର ଡିଜାଇନ୍ ଓ ଲକ୍ଷ୍ୟ ଚନ୍ଦ୍ରଯାନ-୨ ସହିତ ସମାନ । ଚନ୍ଦ୍ରଯାନ-୨ର ଯେଉଁସବୁ ତ୍ରୁଟି ଯୋଗୁଁ ଏହାର ଲ୍ୟାଣ୍ଡରର ସଫ୍ଟଲ୍ୟାଣ୍ଡିଙ୍ଗ୍ ହୋଇପାରିଲା ନାହିଁ, ସେସବୁକୁ ଚନ୍ଦ୍ରଯାନ-୩ରେ ଦୂର କରାଯାଇଥିଲା । ଚନ୍ଦ୍ରଯାନ-୩ର ତିନୋଟି ମଡ୍ୟୁଲ ଥିଲା । ଏହା ହେଉଛି ଅର୍ବିଟର (ପ୍ରପଲସନ୍ ମଡ୍ୟୁଲ), ଲ୍ୟାଣ୍ଡର ଓ ରୋଭର । ଅର୍ବିଟର ହେଉଛି ଚନ୍ଦ୍ର କକ୍ଷରେ ପରିକ୍ରମଣ କରିବା ଯାନ । ଲ୍ୟାଣ୍ଡର ହେଉଛି ଅର୍ବିଟରରୁ ବାହାରି ଚନ୍ଦ୍ର ପୃଷ୍ଠରେ ଅବତରଣ କରିବା ଯାନ ଏବଂ ରୋଭର ହେଉଛି ଚନ୍ଦ୍ରପୃଷ୍ଠରେ ନିଜ ଚକଦ୍ୱାରା ଚାଲି ଚାଲି ଚିତ୍ର ଉତ୍ତୋଳନ କରିବା ଓ ପରୀକ୍ଷା କରିବା ଯାନ । ଲ୍ୟାଣ୍ଡର ନାମ ହେଉଛି ବିକ୍ରମ ଓ ରୋଭର ନାମ ହେଉଛି 'ପ୍ରଜ୍ଞା' । 'ବିକ୍ରମ' ପେଟ ଭିତରେ 'ପ୍ରଜ୍ଞା' ରହିଥିଲା । ଲ୍ୟାଣ୍ଡର ଓଜନ ୧୭୨୪ କି.ଗ୍ରା. ଓ ରୋଭରର ଓଜନ ୨୬ କି.ଗ୍ରା. ।

ବିକ୍ରମକୁ ଧରି ଅର୍ବିଟର ଅଗଷ୍ଟ ୫ ତାରିଖରେ ଚନ୍ଦ୍ର କକ୍ଷରେ ପହଞ୍ଚିଲା ଓ ଚନ୍ଦ୍ରଠାରୁ ଏହାର ଦୂରତା ୧୦୦ କି.ମି. ଥିଲା । ଧୀରେ ଧୀରେ ଏହାର କକ୍ଷ ହ୍ରାସ ପାଇ ଏହା ଚନ୍ଦ୍ର ପୃଷ୍ଠରୁ ୨୫ କି.ମି. ଉପରେ ପରିକ୍ରମଣ କଲା । ଅଗଷ୍ଟ ମାସ ୨୩ ତାରିଖ ଭାରତ ପାଇଁ ଗୋଟିଏ ଗୌରବମୟ ଦିନ ଥିଲା । ଏହି ଦିନ 'ପ୍ରଜ୍ଞା'କୁ ଧରି 'ବିକ୍ରମ' ମୂଳଯାନ ଅର୍ବିଟରରୁ ପୃଥକ୍ ହୋଇ ଧୀରେ ଧୀରେ ଆସି ସୁରକ୍ଷିତ ଭାବେ ଚନ୍ଦ୍ରପୃଷ୍ଠରେ ଅବତରଣ କଲା । ଏଥିପାଇଁ ୨୦ ମିନିଟ୍ ସମୟ ଲାଗିଥିଲା । ମାତ୍ର ଏହି ୨୦ ମିନିଟ୍ ସମୟ ବହୁତ ଜଟିଳ ଓ ଉତ୍କଣ୍ଠାପୂର୍ଣ୍ଣ ଥିଲା । ଇସ୍ରୋର ବୈଜ୍ଞାନିକମାନେ ଏହାକୁ 'ଆତଙ୍କ କାଳ' ନାମ ଦେଇଥିଲେ । ଏହି ସମୟରେ ଲ୍ୟାଣ୍ଡରକୁ ଭୂପୃଷ୍ଠରେ ନିୟନ୍ତ୍ରଣ କରିବା ବନ୍ଦ ଥିଲା ଏବଂ ଲ୍ୟାଣ୍ଡରରେ ଥିବା କମ୍ପ୍ୟୁଟର ସାହାଯ୍ୟରେ ଏହା ନିଜକୁ ନିୟନ୍ତ୍ରଣ କରୁଥିଲା ।

ଲ୍ୟାଣ୍ଡର ଅବତରଣ ପରେ ସେଥିରୁ ପ୍ରଜ୍ଞା ରୋଭର ବାହାରି ଏହାର ଛଅ ଚକ ସାହାଯ୍ୟରେ ଚନ୍ଦ୍ରପୃଷ୍ଠରେ ଚାଲିଲା ଏବଂ ମୃତ୍ତିକା ପରୀକ୍ଷା କଲା । ଏହା ଚନ୍ଦ୍ରପୃଷ୍ଠରେ ୧୪ ଦିନ ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲା ଏବଂ ୩୦୦ ମିଟର ଦୂର ଚାଲିଥିଲା । ବାସ୍ତବରେ ଚନ୍ଦ୍ରର ଗୋଟିଏ ଦିନ (ସୂର୍ଯ୍ୟୋଦୟରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ) ହେଉଛି ପୃଥିବୀର ୧୪ ଦିନ ସହିତ ସମାନ । 'ବିକ୍ରମ' ଓ 'ପ୍ରଜ୍ଞା'କୁ ଚଉଦ ଦିନ ପର୍ଯ୍ୟନ୍ତ କାର୍ଯ୍ୟ କରିପାରିବା ପାଇଁ ଡିଜାଇନ୍ କରାଯାଇଥିଲା । ଏହା ଚନ୍ଦ୍ରପୃଷ୍ଠରେ ଅବତରଣ କରିବା

ସମୟରେ ସେଠାରେ ସୂର୍ଯ୍ୟୋଦୟ ହୋଇଥିଲା ଏବଂ ଏହା ଚନ୍ଦ୍ରର ପୂରା ଗୋଟିଏ ଦିନ କାର୍ଯ୍ୟ କରିଥିଲା । ସୂର୍ଯ୍ୟାସ୍ତ ହେବା ପରେ ଏହାର ସୌରଫଳକ କାର୍ଯ୍ୟ କରି ନପାରିବାରୁ ଏହାକୁ ଶୟନ ମୁଦ୍ରାରେ ରଖାଯାଇଥିଲା । ଏହି ଚଉଦଦିନ ମଧ୍ୟରେ ପ୍ରଜ୍ଞା ଚନ୍ଦ୍ରପୃଷ୍ଠରେ ଏଲୁମିନିୟମ୍, କ୍ୟାଲ୍‌ସିୟମ୍, ଲୌହ, କ୍ରୋମିୟମ୍, ଟାଇଟାନିୟମ୍, ସିଲିକନ୍, ମାଙ୍ଗାନିଜ୍ ଓ ଅମ୍ଳଜାନ ଆଦି ଚିହ୍ନଟ କରିଥିଲା । ସବୁଠାରୁ ଆଶ୍ଚର୍ଯ୍ୟ ଯେ ଏହା ସେଠାରେ ଗନ୍ଧକକୁ ମଧ୍ୟ ଚିହ୍ନଟ କରିଥିଲା । ବିକ୍ରମ ଚନ୍ଦ୍ରପୃଷ୍ଠର ତାପମାତ୍ରା ମାପ କଲା, ଚନ୍ଦ୍ରର ପତଳା ବାୟୁମଣ୍ଡଳ ବିଷୟରେ ସୂଚନା ଦେଲା ଏବଂ ଚନ୍ଦ୍ରପୃଷ୍ଠରେ ଭୂକମ୍ପକୁ ମାପିଲା । ଏଥିପାଇଁ ଏହା ଦେହରେ ତିନୋଟି ଯନ୍ତ୍ରପାତି ଖଞ୍ଜା ଯାଇଥିଲା । ପ୍ରଜ୍ଞାରେ ଥିବା ଦୁଇଟି ଯନ୍ତ୍ରପାତି ସାହାଯ୍ୟରେ ଏହା ଚନ୍ଦ୍ରରେ ଥିବା ଖଣିଜ ପଦାର୍ଥର ସୂଚନା ସହ ସେଠାରେ ଥିବା ବିଭିନ୍ନ ଉପାଦାନ ସମ୍ପର୍କରେ ଖବର ସଂଗ୍ରହ କରିଥିଲା । ରୋଭର ଉତ୍ତୋଳନ କରିଥିବା ଚିତ୍ରଗୁଡ଼ିକୁ ଲ୍ୟାଣ୍ଡର ପାଖକୁ ପ୍ରେରଣ କରିଥିଲା ଏବଂ ଲ୍ୟାଣ୍ଡର ସେସବୁକୁ ଚନ୍ଦ୍ର କକ୍ଷରେ ଘୂରୁଥିବା ଅର୍ବିଟର ଜରିଆରେ ଇସ୍ରୋ କେନ୍ଦ୍ରକୁ ପଠାଇଥିଲା ।

ଚନ୍ଦ୍ରଯାନ-୩ ଅଭିଯାନର ଅନେକ ବୈଶିଷ୍ଟ୍ୟତା ଅଛି । ଏହା ଭାରତ ପାଇଁ ଗୌରବ ଆଣି ଦେଇଛି । ଏହା ପୂର୍ବରୁ ଯୁକ୍ତରାଷ୍ଟ୍ର ଆମେରିକା, ରୁଷିଆ ଓ ଚାଇନା ନିଜ ନିଜର ଚନ୍ଦ୍ରଯାନକୁ ଚନ୍ଦ୍ରପୃଷ୍ଠରେ ସୁରକ୍ଷିତ ଭାବେ ଅବତରଣ କରାଇବାରେ ସଫଳ ହୋଇଥିଲେ । ଏହି କୃତିତ୍ୱ ପାଇବାରେ ଭାରତ ହେଉଛି ଚତୁର୍ଥ ଦେଶ । ଆମେରିକା ଓ ରୁଷିଆ ୧୯୬୬ ମସିହାରେ ଚନ୍ଦ୍ରପୃଷ୍ଠରେ ଯାନକୁ ସୁରକ୍ଷିତ ଭାବେ ଅବତରଣ କରାଇଥିଲେ ଏବଂ ଚାଇନା ୨୦୧୯ ମସିହାରେ ଏହା ହାସଲ କରିଥିଲା ।

ପୁନଶ୍ଚ ଚନ୍ଦ୍ରର ଦକ୍ଷିଣ ମେରୁରେ ଅନ୍ୟ କୌଣସି ଦେଶ ଯାନକୁ ଅବତରଣ କରାଇ ନଥିଲେ । ଭାରତ ଦକ୍ଷିଣ ମେରୁରେ ଯାନକୁ ଅବତରଣ କରାଇବାରେ ହେଉଛି ଏକମାତ୍ର ଦେଶ । ଚନ୍ଦ୍ରଯାନ ଚନ୍ଦ୍ରର ୭୦ ଡିଗ୍ରୀ ଦକ୍ଷିଣ ଅକ୍ଷାଂଶରେ ଅବତରଣ କରିଛି । ସୂଚନାଯୋଗ୍ୟ ଯେ ପୂର୍ବରୁ ଚନ୍ଦ୍ରରେ ଅବତରଣ କରିଥିବା ସମସ୍ତ ଯାନ ଏହାର ବିଷୁବମଣ୍ଡଳୀୟ ଅଞ୍ଚଳରେ ଅବତରଣ କରିଛି । ବିଷୁବରେଖାର ଅଳ୍ପ କେତେ ଡିଗ୍ରୀ ଉତ୍ତର କିମ୍ବା ଦକ୍ଷିଣ ଅକ୍ଷାଂଶରେ ଏଗୁଡ଼ିକ ନିରାପଦରେ ଅବତରଣ କରିଛନ୍ତି । ବିଷୁବରେଖାଠାରୁ ସବୁଠାରୁ ଅଧିକ ଦୂରରେ ଅବତରଣ କରିଥିବା ଯାନ ହେଉଛି 'ନାସା'ର ସର୍ଭେୟର-୭ । ଏହା ୧୯୬୮ ଜାନୁଆରୀ ୧୦ ତାରିଖରେ ୪୦ ଡିଗ୍ରୀ ଦକ୍ଷିଣ ଅକ୍ଷାଂଶରେ ଅବତରଣ କରିଥିଲା । ବିଷୁବରେଖା ନିକଟରେ ଅବତରଣ କରିବା ହେଉଛି ଅଧିକ ସହଜ ଏବଂ ନିରାପଦ । ଏଠାରେ ତାପମାତ୍ରା ଓ ପୃଷ୍ଠଭାଗ ହେଉଛି କାର୍ଯ୍ୟ କରିବା ପାଇଁ ସୁବିଧାଜନକ ଏବଂ ଯାନର ଯନ୍ତ୍ରପାତି ଏହି ଅଞ୍ଚଳରେ ଅଧିକ ଦିନ ପର୍ଯ୍ୟନ୍ତ କାର୍ଯ୍ୟ କରିପାରିଥାଏ । ଏହି ଅଞ୍ଚଳର ପୃଷ୍ଠ ହେଉଛି ମସୃଣ ଓ ସମତଳ ଏବଂ ଏଠାରେ ତୀକ୍ଷ୍ଣ ଢାଲୁ ପ୍ରାୟ ନାହିଁ । ପୁନଶ୍ଚ ଏଠାରେ ବହୁତ କମ୍ ସଂଖ୍ୟକ ପାହାଡ଼ ଓ ଗର୍ତ୍ତ ଅଛି । ପୃଥିବୀକୁ ମୁହଁ କରିଥିବା ପାର୍ଶ୍ୱରେ ପ୍ରଚୁର ସୂର୍ଯ୍ୟକିରଣ ପଡ଼ିଥାଏ, ଯାହା ସୌରଚାଳିତ ଯନ୍ତ୍ରପାତିଗୁଡ଼ିକୁ ନିରନ୍ତର ଶକ୍ତି ଯୋଗାଇଥାଏ ।

ଅନ୍ୟପକ୍ଷରେ ଚନ୍ଦ୍ରର ମେରୁ ଅଞ୍ଚଳ ହେଉଛି ପୂରାପୂରି ଅଲଗା ଏବଂ ପୃଷ୍ଠଭାଗ ହେଉଛି ଅସମତଳ । ମେରୁ ଅଞ୍ଚଳର ନିକଟବର୍ତ୍ତୀ ଅନେକ ସ୍ଥାନ ସମ୍ପୂର୍ଣ୍ଣ ଅନ୍ଧକାରରେ ଥାଏ ଏବଂ ଏହି ସ୍ଥାନରେ କେବେ ସୂର୍ଯ୍ୟାଲୋକ ପଡ଼ିନଥାଏ । ଏଠାରେ ତାପମାତ୍ରା ବିଯୁକ୍ତ ୨୩୦ ଡିଗ୍ରୀ ସେଲ୍‌ସିୟସ୍ ପର୍ଯ୍ୟନ୍ତ ହ୍ରାସ ପାଇଥାଏ । ତୁଳନାତ୍ମକ ଭାବେ ପୃଥିବୀର ସର୍ବନିମ୍ନ ତାପମାତ୍ରା ପୂର୍ବ ଆଣ୍ଟାର୍କଟିକା ଉପତ୍ୟକାରେ ଶୀର୍ଷ ଭାଗରେ ବିଯୁକ୍ତ ୯୨ ଡିଗ୍ରୀ ସେଲ୍‌ସିୟସ୍ ପର୍ଯ୍ୟନ୍ତ ଯାଇଥାଏ । ସୂର୍ଯ୍ୟାଲୋକର ଅଭାବ ଏବଂ ଅତି କମ୍ ତାପମାତ୍ରାରେ ଚନ୍ଦ୍ରର ମେରୁ ଅଞ୍ଚଳରେ ଯନ୍ତ୍ରପାତିଗୁଡ଼ିକ କାର୍ଯ୍ୟ କରିବା ବହୁତ କଷ୍ଟକର ହୋଇଥାଏ । ପୁନଶ୍ଚ ଏହି ଅଞ୍ଚଳରେ ଅଳ୍ପ କେତେକ ସେଣ୍ଟିମିଟରରୁ ଅନେକ ହଜାର କିଲୋମିଟର ଆକାରର ଅନେକ ଗଭୀର ଗର୍ତ୍ତ ଅଛି ।

ତାହାହେଲେ ଭାରତ ଦକ୍ଷିଣ ମେରୁ ଅଞ୍ଚଳକୁ ଅବତରଣ ପାଇଁ କାହିଁକି ଚୟନ କଲା ? ଏହାର ପରିବେଶ ଓ ଏଠାରେ ଅବତରଣ କରି କାର୍ଯ୍ୟ କରିବାର ଅସୁବିଧା ଯୋଗୁଁ ଏହା ବିଷୟରେ ଆମକୁ ବିଶେଷ ତଥ୍ୟ ଜଣାନାହିଁ । କିନ୍ତୁ କେତେକ କକ୍ଷ ଭ୍ରମଣକାରୀ ଅଭିଯାନରୁ ପ୍ରମାଣ ମିଳିଛି ଯେ ଏହି ଅଞ୍ଚଳରେ ଅନେକ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ଲୁକ୍କାୟିତ ଅଛି । କେତେକ ଗଭୀର ଗର୍ତ୍ତରେ ବରଫ ଅଣୁ ଥିବାର ସୂଚନା ମିଳିଛି । ଏଣୁ ଦକ୍ଷିଣ ମେରୁ ଅଞ୍ଚଳର ଅନୁସନ୍ଧାନ ପାଇଁ ଭାରତ ସିଦ୍ଧାନ୍ତ ନେଇଥିଲା । ଏଥିରୁ ମଧ୍ୟ ଆମକୁ ଅନେକ ତଥ୍ୟ ଜଣାପଡ଼ିଛି । ଏହାର ବିଶ୍ଳେଷଣ ପରେ ଚନ୍ଦ୍ରର ଦକ୍ଷିଣ ମେରୁ ସମ୍ବନ୍ଧରେ ଅଧିକ ସୂଚନା ମିଳିବ ।

ଭାରତ ଚନ୍ଦ୍ରଯାନ–୩ ପଠାଇବାର କିଛି ଦିନ ପରେ ରୁଷିଆ ଲୁନା–୨୫ ଯାନକୁ ଚନ୍ଦ୍ରର ଦକ୍ଷିଣ ମେରୁକୁ ପଠାଇଥିଲା । ଏହା ଆଶା କରିଥିଲା ଯେ ଭାରତ ପୂର୍ବରୁ ଚନ୍ଦ୍ରର ଦକ୍ଷିଣ ମେରୁକୁ ଛୁଇଁ ଏଥିପାଇଁ ବିଶ୍ୱର ପ୍ରଥମ ରାଷ୍ଟ୍ରର ଗୌରବ ନେବ । କିନ୍ତୁ ରୁଷିଆର ଆଶା ପୂରଣ ହେଲା ନାହିଁ । ଭାରତ ଚନ୍ଦ୍ରର ଦକ୍ଷିଣ ମେରୁକୁ ଛୁଇଁବାର ତିନି ଦିନ ପୂର୍ବରୁ ଲୁନା–୨୫ ନିୟନ୍ତ୍ରଣ ହରାଇ ଚନ୍ଦ୍ରପୃଷ୍ଠରେ ପିଟି ହୋଇ ନଷ୍ଟ ହୋଇଗଲା ।

ଚନ୍ଦ୍ରଯାନ–୩ ଭାରତ ପାଇଁ ଗୌରବ ଆଣିଛି । ପୃଥିବୀର ଅନେକ ରାଷ୍ଟ୍ର ଏଥିପାଇଁ ଭାରତକୁ ଅଭିନନ୍ଦନ ଜଣାଇଛନ୍ତି । ଚନ୍ଦ୍ରଯାନ–୩ ଅଭିଯାନରେ ଖର୍ଚ୍ଚ ହୋଇଛି ୬୧୫ କୋଟି ଟଙ୍କା, ଯାହା ହେଉଛି ଅନ୍ୟ ଦେଶର ଅଭିଯାନ ଖର୍ଚ୍ଚଠାରୁ ଢ଼େର୍ କମ୍ । ଏପରିକି ଆମେରିକାର ବୈଜ୍ଞାନିକମାନେ ଭାରତ ଆସି ଆମ ବୈଜ୍ଞାନିକମାନଙ୍କ ସହ ଆଲୋଚନା କରିଛନ୍ତି । ଏତେ କମ୍ ଖର୍ଚ୍ଚରେ ଏବଂ ନିର୍ଭୁଲ ଭାବରେ ଭାରତ କିପରି ଏହି ଅଭିଯାନ କରିପାରିଥିଲା, ସେହି ବିଷୟ ସେମାନେ ବୁଝୁଛନ୍ତି ।

ଭାରତର ପ୍ରଧାନମନ୍ତ୍ରୀ ଇସ୍ରୋର ବୈଜ୍ଞାନିକମାନଙ୍କୁ ଚନ୍ଦ୍ରଯାନ–୩ର ସଫଳତା ପାଇଁ ଅଭିନନ୍ଦନ ଜଣାଇଛନ୍ତି । ଚନ୍ଦ୍ରଯାନ–୩ର ଲ୍ୟାଣ୍ଡର ଅବତରଣର ସିଧା ପ୍ରସାରଣ କରାଯାଇଥିଲା ଏବଂ ପ୍ରଧାନମନ୍ତ୍ରୀ ଦକ୍ଷିଣ ଆଫ୍ରିକାରୁ ଏହାକୁ ଭିଡ଼ିଓ କନ୍‌ଫରେନ୍ସିଂ ମାଧ୍ୟମରେ ଦେଖିଥିଲେ । ପ୍ରଧାନମନ୍ତ୍ରୀ ଏକ ଅନ୍ତର୍ଜାତୀୟ ସମ୍ମିଳନୀରେ ଯୋଗଦେବା ପାଇଁ ସେଠାକୁ ଯାଇଥିଲେ । ସେଠାରୁ ଫେରି ସେ ସିଧା ବାଙ୍ଗାଲୋର ଯାଇ ବୈଜ୍ଞାନିକମାନଙ୍କୁ ସାକ୍ଷାତ୍ କରି ଧନ୍ୟବାଦ ଦେଇଥିଲେ । ସେ ଚନ୍ଦ୍ରଯାନ–୩ ଅବତରଣ କରିଥିବା ସ୍ଥାନର ନାମ 'ଶିବଶକ୍ତି' ରଖିଲେ ଏବଂ ଚନ୍ଦ୍ରଯାନ–୨ ଯେଉଁ ସ୍ଥାନରେ ପଡ଼ିଥିଲା ତାହାର ନାମ 'ତିରଙ୍ଗା' ରଖିଲେ । ଏହା ସହିତ ପ୍ରତ୍ୟେକ ବର୍ଷ ଅଗଷ୍ଟ ୨୩ ତାରିଖକୁ 'ଜାତୀୟ ମହାକାଶ ଦିବସ' ଭାବେ ପାଳନ କରିବା ପାଇଁ ସେ ଘୋଷଣା କଲେ । ଅଗଷ୍ଟ ୨୩ରେ ଚନ୍ଦ୍ରଯାନ–୩ର ଲ୍ୟାଣ୍ଡର ଚନ୍ଦ୍ରପୃଷ୍ଠକୁ ଛୁଇଁଥିଲା ।

ପ୍ରଧାନମନ୍ତ୍ରୀ ଏହି ବର୍ଷ ଅକ୍ଟୋବର ୧୭ ତାରିଖରେ ଭାରତୀୟ ମହାକାଶ କାର୍ଯ୍ୟକ୍ରମ ସମୀକ୍ଷା କରିବା ବେଳେ ୨୦୪୦ ମସିହା ସୁଦ୍ଧା ଚନ୍ଦ୍ରରେ ପ୍ରଥମ ଭାରତୀୟଙ୍କୁ ପହଞ୍ଚାଇବା ପାଇଁ ଇସ୍ରୋର ଲକ୍ଷ୍ୟ ହେବା ଉଚିତ ବୋଲି କହିଛନ୍ତି । ଭାରତ ଅନ୍ତରୀକ୍ଷକୁ ମହାକାଶଚାରୀ ପଠାଇବା ପାଇଁ ଗଗନଯାନ ଅଭିଯାନ ଆରମ୍ଭ କରିଛି । ଏହାର ପ୍ରଥମ ପରୀକ୍ଷଣ ଉଡ଼ାଣ ଏହି ବର୍ଷ ଅକ୍ଟୋବର ମାସ ୨୧ ତାରିଖରେ ସଫଳ ହୋଇଛି । ଏହାପରେ ଆଉ କେତୋଟି ପରୀକ୍ଷଣ ପରେ ୨୦୨୫ ମସିହାରେ ତିନିଜଣ ଭାରତୀୟ ମହାକାଶଚାରୀ ଅନ୍ତରୀକ୍ଷକୁ ଯାଇ ଫେରି ଆସିବେ । ଏହା ହେଉଛି ଚନ୍ଦ୍ରରେ ଭାରତୀୟଙ୍କର ପଦାର୍ପଣର ପୂର୍ବ ପ୍ରସ୍ତୁତି ।

ସମ୍ପାଦକ, ସାଇନ୍ସ ହୋରିଜନ୍
୭୦, ଲକ୍ଷ୍ମୀବିହାର, ଫେଜ୍–୧
ଭୁବନେଶ୍ୱର–୭୫୧୦୧୮

❖ ❖ ❖

# କାଳରାତ୍ରିର ଉପାସ୍ୟା ମା' ମହାକାଳୀ

ଅନନ୍ତ ଗୋପାଳ ପଣ୍ଡା

ପ୍ରାକ୍ ବୈଦିକ କାଳରୁ ପୁଣ୍ୟଭୂମି, ଦେବଭୂମି ଭାରତବର୍ଷରେ ଶକ୍ତିମୟୀ ମା'ଙ୍କର ପୂଜା ଆରାଧନାର ଧାରା ରହିଛି ଅବ୍ୟାହତ । ମହେଞ୍ଜୋଦାରୋ ଓ ହରପ୍ପା ସଭ୍ୟତା ସହିତ ଇଜିପ୍ଟ ଓ ଗ୍ରୀସ୍ ସଭ୍ୟତାରେ ମଧ୍ୟ ଶକ୍ତି ପୂଜନର ପ୍ରମାଣ ହୋଇଥାଏ ଦୃଷ୍ଟିଗୋଚର । ଶକ୍ତି ବିହୁନେ ଶିବ ଶବରେ ହୁଅନ୍ତି ପରିଣତ । ଜଡଠାରୁ ଚେତନ ପର୍ଯ୍ୟନ୍ତ ସର୍ବତ୍ର ଶକ୍ତିମୟୀଙ୍କର ସତ୍ତା ବିଦ୍ୟମାନ । ପରମାତ୍ମା ପରମେଶ୍ୱରଙ୍କ ଅନନ୍ତ ଶକ୍ତି ମଧ୍ୟରୁ ତିନିଗୋଟି ଶକ୍ତି ହେଉଛି ମୁଖ୍ୟ । ସେମାନେ ହେଲେ ଅନ୍ତରଙ୍ଗା ବା ଚିତ ଶକ୍ତି, ବହିରଙ୍ଗା ବା ମାୟାଶକ୍ତି ଏବଂ ତୃତୀୟଟି ହେଉଛି ତଟସ୍ଥା ବା ଜୀବଶକ୍ତି । ନିର୍ଗୁଣ ନିରାକାର ପରଂବ୍ରହ୍ମ ତ୍ରିଗୁଣରେ ବିଭକ୍ତ ହୋଇ ମାୟାଶକ୍ତି ବଳରେ ଏ ସୃଷ୍ଟିକୁ କରିଛନ୍ତି ସର୍ଜନା । ଶକ୍ତି ହେଉଛି ଏ ସୃଷ୍ଟିର ମୂଳାଧାର । ପଦ୍ମଯୋନି ବ୍ରହ୍ମାଙ୍କର ଶକ୍ତି ଭାବରେ ରଜ ଗୁଣରେ ମହାସରସ୍ୱତୀ ଏ ବିଶ୍ୱବ୍ରହ୍ମାଣ୍ଡର କରିଛନ୍ତି ସଂରଚନା । ଗର୍ଭୋଦକଶାୟୀ ଶଙ୍ଖ ଚକ୍ରଧାରୀ ବିଷ୍ଣୁଙ୍କର ଶକ୍ତି ଭାବରେ ସ୍ୱଗୁଣରେ ମା' ମହାଲକ୍ଷ୍ମୀ ଏ ସୃଷ୍ଟିକୁ କରୁଛନ୍ତି ପରିପାଳନ । ଧ୍ୱଂସକର୍ତ୍ତା ଧୂର୍ଜଟୀ ଶକ୍ତି ଭାବରେ ତମ ଗୁଣରେ ମା' ମହାକାଳୀ ଦୁଷ୍ଟ ଶକ୍ତିର କରୁଛନ୍ତି ସଂହାର ଓ ରଚନା, କରୁଛନ୍ତି ପ୍ରଳୟ । ଦେବୀ ଭାଗବତରେ ଏହି ଶକ୍ତିମୟୀଙ୍କର ମହିମା ହୋଇଛି ବର୍ଣ୍ଣିତ । ଯଥା :-

'ଶକ୍ତି କରୋତି ବ୍ରହ୍ମାଣ୍ଡଂ ସାବୈ ପାଳୟତେ ଖିଳଂ,
ଇଚ୍ଛୟା ସଂହରତ୍ୟେଷା ଜଗଦେତତ୍‌ଚରାଚ ରମ ।'

ଅର୍ଥାତ ଏ ସୃଷ୍ଟି ସର୍ଜନା କରିବାରେ ଶକ୍ତିମୟୀଙ୍କର ରହଛି ଏକ ନିର୍ଣ୍ଣାୟକ ଭୂମିକା । ସେ ହେଉଛନ୍ତି ବିଶ୍ୱ ସୃଷ୍ଟି କାରିଣୀ । ତାଙ୍କର ଦୟାରେ ଏ ସୃଷ୍ଟି ହେଉଛି ଗତିଶୀଳ ଏବଂ ତାଙ୍କ ଇଚ୍ଛାରେ ମୁହୂର୍ତ୍ତକ ମଧ୍ୟରେ ସୃଷ୍ଟି ହୋଇପାରେ ପ୍ରଳୟ । ଏ ଚରାଚର ଜଗତ ତାଙ୍କର ଲୀଳାକ୍ଷେତ୍ର । ସର୍ବତ୍ର ତାଙ୍କର ସତ୍ତା ହୋଇଥାଏ ଅନୁଭୂତ । ନୀଳନଭର ବ୍ୟାପକତାରେ, ନୀଳ ସାଗରର ଲହରୀମାଳାରେ, ପାଦପ ମାନଙ୍କର ସବୁଜିମାରେ, ପବନର ହିଲ୍ଲୋଳରେ, ପକ୍ଷୀର କୂଜନରେ, ମା'ଙ୍କର ଉପସ୍ଥିତିକୁ ସାଧକ ସାଧନା ମାଧ୍ୟମରେ କରିଥାଏ ଅନୁଭବ ।

ମା' ଶକ୍ତିମୟଙ୍କର ଭିନ୍ନ ଭିନ୍ନ ସ୍ୱରୂପକୁ ବିଭିନ୍ନ ଦିବସ ବା ରାତ୍ରିରେ କରାଯାଏ ଉପାସନା । ମୁଖ୍ୟତଃ ରାତ୍ରିରେ କରାଯାଉଥିବା ପୂଜା ବିଶେଷ ଭାବରେ ହୋଇଥାଏ ଫଳପ୍ରଦ । ଉପାସ୍ୟାଙ୍କର ଭିନ୍ନତା ଦୃଷ୍ଟିରୁ ରାତ୍ରିର ମଧ୍ୟ କରାଯାଇଛି ନାମକରଣ । ସପ୍ତସତୀ ଚଣ୍ଡୀରେ ଏହି ରାତ୍ରିମାନଙ୍କ ସଂପର୍କରେ ରହିଛି ବର୍ଣ୍ଣନା । ଯଥା :-

''କାଳରାତ୍ରିର୍ମହାରାତ୍ରିର୍ମୋହରାତ୍ରିଶ୍ଚ ଦାରୁଣା ।
ତ୍ୱଂ ଶ୍ରୀସ୍ତ୍ୱମୀଶ୍ୱରୀ ତ୍ୱଂ ହ୍ରୀସ୍ତ୍ୱଂ ବୁଦ୍ଧିର୍ବୋଧଲକ୍ଷଣା''

ଅର୍ଥାତ ମା' ତୁମେ ଅଟ ଭୟଙ୍କର କାଳରାତ୍ରି, ମୋହରାତ୍ରି ଏବଂ ମହାରାତ୍ରି । ତୁମେ ଶ୍ରୀ, ତୁମେ ହିଁ ଈଶ୍ୱରୀ, ତୁମେ ହିଁ ହ୍ରୀ ଏବଂ ତୁମେ ମଧ୍ୟ ବୋଧ ସ୍ୱରୂପା ବୁଦ୍ଧି ଅଟ । ପବିତ୍ର କାର୍ତ୍ତିକ ମାସର ଅମାବାସ୍ୟା

ଯୁକ୍ତାଚତୁର୍ଦ୍ଦଶୀ ରାତ୍ରି ହେଉଛି କାଳରାତ୍ରି । ଏହି ରାତ୍ରିରେ ମା' କାଳୀଙ୍କର କରାଯାଏ ଆରାଧନା । ଭାଦ୍ରବ ମାସ କୃଷ୍ଣ ପକ୍ଷ ଅଷ୍ଟମୀ ରାତ୍ରି ମୋହରାତ୍ରି ନାମରେ ପ୍ରସିଦ୍ଧ । ସମସ୍ତେ ମୋହିତ ବା ନିଦ୍ରିତ ଥିବା ଅବସ୍ଥାରେ ଭଗବାନ ଶ୍ରୀକୃଷ୍ଣ ଏବଂ ମା' ଦୁର୍ଗା ଉଭୟଙ୍କର ହୋଇଥିଲା ଆବିର୍ଭାବ ଏବଂ ପରେ ଜନ୍ମସ୍ଥାନ ହୋଇଥିଲା ପରିବର୍ତ୍ତନ । ଆଶ୍ୱିନ ମାସ ଶୁକ୍ଳପକ୍ଷ ଅଷ୍ଟମୀ ରାତ୍ରି ହେଉଛି ମହାରାତ୍ରି । କାରଣ ଅଷ୍ଟମୀର ଶେଷ ଏବଂ ନବମୀ ତିଥି ଆରମ୍ଭର ସନ୍ଧିକ୍ଷଣରେ ମା' ଦୁର୍ଗାଙ୍କର ହୋଇଥାଏ ସନ୍ଧି ପୂଜା । ସେହପରି ମାଘ ମାସ ଶୁକ୍ଳ ପକ୍ଷ ଦ୍ୱିତୀୟା ରାତ୍ରି ସର୍ବସିଦ୍ଧି ପ୍ରଦାନକାରୀ ରାତ୍ରି ତଥା ଦାରୁଣ ରାତ୍ରି ଭାବରେ ହୋଇଥାଏ ଅଭିହିତ ।

ସୃଷ୍ଟିର ଆରମ୍ଭରୁ ପଞ୍ଚମହାଭୂତଙ୍କର ଅଧିପତି ଭାବେ ପଞ୍ଚଦେବଙ୍କ ଉପାସନାର ଧାରା ରହିଛି ଅବ୍ୟାହତ । ଜୀବ ଓ ଜଗତ ଉଭୟ ଏହି ପଞ୍ଚ ମହାଭୂତର ସହାୟତାରେ ହୋଇଛନ୍ତି ସୃଷ୍ଟି । ଏହି ପଞ୍ଚ ମହାଭୂତ ହେଲେ କ୍ଷୀତି, ଆପ, ତେଜ, ମରୁତ ଓ ବ୍ୟୋମ । ଆଗମ ଶାସ୍ତ୍ରରେ ଏହି ପଞ୍ଚମହାଭୂତଙ୍କ ଅଧିପତିମାନଙ୍କର ରହିଛି ବର୍ଣ୍ଣନା । ଯଥା:–

''ଆକାଶସ୍ୟ ଧିପୋ ବିଷ୍ଣୁ ରଗ୍ନେଶ୍ଚୈବ ମହେଶ୍ୱରୀ ।
ବାୟୋଃ ସୂର୍ଯ୍ୟଃ କ୍ଷିତେରୀଶୋ ଜୀବନସ୍ୟ ଗଣାଧିପଃ ॥''

ଅର୍ଥାତ ପୃଥିବୀର ଅଧିପତି ହେଉଛନ୍ତି ଶିବ । ଜଳର ଅଧିପତି ହେଉଛନ୍ତି ଗଜାନନ । ତେଜ ବା ଅଗ୍ନିର ଅଧିପତି ହେଲେ ଅମ୍ବିକା । ବାୟୁର ଅଧିପତି ଅଟନ୍ତି ସୂର୍ଯ୍ୟ ଏବଂ ବ୍ୟୋମର ଅଧିପତି ହେଉଛନ୍ତି ବିଷ୍ଣୁ । ଏହି ପଞ୍ଚ ଅଧିପତିଙ୍କର ଉପାସକମାନେ ନିଜର ଇଷ୍ଟଙ୍କୁ ଆଧାର କରି ପାଞ୍ଚଗୋଟି ସଂପ୍ରଦାୟରେ ହୋଇଛନ୍ତି ବିଭକ୍ତ । ଶିବଙ୍କୁ ଇଷ୍ଟ ଭାବେ ଉପାସନା କରୁଥିବା ଉପାସକମାନେ ନିଜକୁ ଶୈବ ଭାବେ କରିଛନ୍ତି ଅଭିହିତ । ସେହିପରି ଗଣେଶଙ୍କ ଉପାସକଙ୍କୁ ଗାଣପତ୍ୟ, ଅମ୍ବିକାଙ୍କର ଉପାସକମାନଙ୍କୁ ଶାକ୍ତ, ସୂର୍ଯ୍ୟଙ୍କ ଉପାସକଙ୍କୁ ସୌର ଏବଂ ନାରାୟଣ ବା ବିଷ୍ଣୁଙ୍କର ଆରାଧନା କରୁଥିବା ଉପାସକଗଣ ବୈଷ୍ଣବ ଭାବେ ହୋଇଛନ୍ତି ପରିଚିତ ।

ଶକ୍ତିମୟୀ ମା' ଅମ୍ବିକାଙ୍କର ଆରାଧନାରେ ଲିପ୍ତଥିବା ଶାକ୍ତ ସମ୍ପ୍ରଦାୟ ମୁଖ୍ୟତଃ ଦଶମହାବିଦ୍ୟାଙ୍କର ଉପାସକ । ମହାମାୟୀ ଭଗବତୀ ନିଜର ସ୍ୱରୂପ ସଂପର୍କରେ ସ୍ୱମୁଖରେ ପ୍ରକାଶକରି କହିଛନ୍ତି ।

''ମହାକାଳୀ ତଥା ତାରା ଷୋଡ଼ଶୀ ଭୁବନେଶ୍ୱରୀ,
ଭୈରବୀ ବଗଳା, ଛିନ୍ନମସ୍ତା ମହାତ୍ରିପୁରସୁନ୍ଦରୀ,
ଧୂମାବତୀଚ ମାତଙ୍ଗୀ ନୃଣାମସ୍ତୁ ବିମୁକ୍ତିଦା ।''

ଏହି ଦଶମହାବିଦ୍ୟା ହେଲେ ଶାକ୍ତମାନଙ୍କର ଉପାସ୍ୟା ଏବଂ ଆଶୁମୁକ୍ତି ପ୍ରଦାନକାରିଣୀ । ମହାବିଦ୍ୟା ଅର୍ଥ ଶ୍ରେଷ୍ଠ ବିଦ୍ୟା । ''ସା ବିଦ୍ୟା ଯା ବିମୁକ୍ତୟେ'' ନ୍ୟାୟରେ ଯେଉଁ ବିଦ୍ୟା ଜୀବକୁ ମାୟା ବନ୍ଧନରୁ ମୁକ୍ତ କରାଇ ମୋକ୍ଷ ମାର୍ଗରେ ପରିଚାଳିତ କରାଇଥାଏ ତାହା ବିଦ୍ୟା ପଦବାଚ୍ୟ । ଏହି ମହାବିଦ୍ୟାମାନଙ୍କ ମଧ୍ୟରେ ପ୍ରଥମ ମହାବିଦ୍ୟା ହେଲେ ମହାକାଳୀ । ଏହି ଦେବୀଙ୍କର ପୂଜାର୍ଚ୍ଚନା ବିଶେଷକରି କାର୍ତ୍ତିକ ଅମାବାସ୍ୟା ଯୁକ୍ତ ଚତୁର୍ଦ୍ଦଶୀ ରାତ୍ରିରେ କରାଯାଇଥାଏ । ଏହି ରାତ୍ରିର ନାମ ହେଉଛି କାଳରାତ୍ରି । ତାନ୍ତ୍ରିକ, ସାଧକ ଏବଂ ଉପାସକଗଣ ଏହି ରାତ୍ରିରେ ମା'ଙ୍କର କରିଥାନ୍ତି ପୂଜାର୍ଚ୍ଚନା ।

ମା'କାଳୀଙ୍କର ଆବିର୍ଭାବ ହେତୁ ଦକ୍ଷ ପ୍ରଜାପତିଙ୍କର କନ୍ୟା ସତୀ ପିତାଙ୍କର ବାରଣ ସତ୍ତ୍ୱେ ଇହକାଳ ପର କାଳର ଦେବତା ରୂପେ ବରଣ କରିଥିଲେ ସଂହାରକର୍ତ୍ତା ସଦାଶିବଙ୍କୁ । ଶ୍ମଶାନବାସୀ ଶଙ୍କରଙ୍କର ଭସ୍ମ ବିଲେପିତ ଶରୀର, ବ୍ୟାଘ୍ର ଚର୍ମ ପରିଧାନ, ସର୍ପ ଭୂଷଣ ଆଦି ବିଲକ୍ଷଣକୁ ପ୍ରଜାପତି ଦକ୍ଷ ଗ୍ରହଣ କରି ପାରୁନଥିଲେ । ଜାମାତା ହେବା ପରେ ମଧ୍ୟ ତାଙ୍କ ମନ ମଧ୍ୟରେ ଥିଲା ଅସନ୍ତୋଷ । ଏକଦା ପ୍ରଜାପତିମାନଙ୍କ ଦ୍ୱାରା କରାଯାଉଥିବା ଯଜ୍ଞରେ ଶିବ, ଶ୍ୱଶୁର ଦକ୍ଷକୁ ଉପଯୁକ୍ତ ସମ୍ମାନ ପ୍ରଦର୍ଶନ ନ କରିବାରୁ ଦକ୍ଷ କ୍ରୋଧିତ ହୋଇ ଶିବ ରହିତ ଅନ୍ୟ ଏକ ଯଜ୍ଞର କଲେ ଆୟୋଜନ । ନିମନ୍ତ୍ରଣ ଦେଲେ ନାହିଁ କନ୍ୟା ସତୀ ଏବଂ ଜାମାତା ମହାଦେବଙ୍କୁ । ଦେବର୍ଷିଙ୍କ ମୁଖରୁ ପିତାଙ୍କ ଯଜ୍ଞର ଆୟୋଜନ ସଂପର୍କରେ ଅଭିହିତ ହୋଇ ସତୀ ଯଜ୍ଞ ସ୍ଥଳକୁ ଯିବା ପାଇଁ ଭିକ୍ଷାକଲେ ସ୍ୱାମୀଙ୍କର

ଅନୁମତି । ବିନା ନିମନ୍ତ୍ରଣରେ ଯିବା ଉଚିତ ହେବ ନାହିଁ ବୋଲି କାରଣ ଦର୍ଶାଇ ଶିବ ଯିବା ପାଇଁ ସତୀଙ୍କୁ କଲେ ବାରଣ । ବାରମ୍ବାର ସତୀ ଅନୁରୋଧ କରିବା ସତ୍ତ୍ୱେ ଚନ୍ଦ୍ରଶେଖର ବାରଣ କରିବାରୁ ସତୀ ହେଲେ କ୍ରୋଧାନ୍ୱିତା । ତାଙ୍କର ମନ ମଧ୍ୟରେ କ୍ରୋଧାଗ୍ନି ହେଲା ପ୍ରଜ୍ୱଳିତ । ଶରୀରରେ ସୃଷ୍ଟି ହେଲା କମ୍ପନ । ଶରୀରର ରଙ୍ଗ କୃଷ୍ଣ ବର୍ଣ୍ଣରେ ହେଲା ରୂପାନ୍ତରିତ । ନୟନ ଯୁଗଳ ଧାରଣ କଲା ରକ୍ତବର୍ଣ୍ଣ । ସତୀଙ୍କର ଭୟଙ୍କର ରୂପ ସନ୍ଦର୍ଶନରେ ଶିବ ସ୍ଥାନ ତ୍ୟାଗ ନିମନ୍ତେ ଉଦ୍ୟତ ହେବାରୁ ଦଶଦିଗରେ ଦଶବିଧ ରୂପ ଧାରଣ କରି ଦେବୀ ହେଲେ ପ୍ରକଟିତା । ଯେଉଁ ଦିଗକୁ ମହେଶ୍ୱର ଦୃଷ୍ଟି ନିକ୍ଷେପ କଲେ, ସେ ଦିଗରେ ଭିନ୍ନ ଏକ ରୂପରେ ସତୀ ହୋଇଥିଲେ ଦଣ୍ଡାୟମାନ । ଶିବଙ୍କ ପଥ ହେଲା ଅବରୋଧ । ଦଶଦିଗରେ ଉଭା ଏହି ଦେବୀମାନେ ଦଶ ମହାବିଦ୍ୟା ନାମରେ ହେଲେ ନାମିତା । ସେହି ଦଶ ମହାବିଦ୍ୟା ହେଲେ, ଉତ୍ତରରେ କାଳୀ, ଉତ୍ତର ପୂର୍ବରେ ଷୋଡ଼ଶୀ, ପୂର୍ବରେ ଛିନ୍ନମସ୍ତା, ଦକ୍ଷିଣ ପୂର୍ବରେ ଧୂମାବତୀ ଦକ୍ଷିଣରେ ବଗଳା, ଦକ୍ଷିଣ ପଶ୍ଚିମରେ କମଳା, ପଶ୍ଚିମରେ ଭୁବନେଶ୍ୱରୀ, ଉତ୍ତର ପଶ୍ଚିମରେ ମାତଙ୍ଗୀ, ଊର୍ଦ୍ଧ୍ୱରେ ତାରା ଓ ନିମ୍ନରେ ଭୈରବୀ । ଏହିପରି ଭାବରେ ସତୀଙ୍କ କ୍ରୋଧାଗ୍ନିରୁ ଶିବଙ୍କର ପଥ ଅବରୋଧ ନିମନ୍ତେ ଦଶମହାବିଦ୍ୟା ହେଲେ ଆବିର୍ଭୂତା । ଏହି ମହାବିଦ୍ୟାମାନଙ୍କ ମଧ୍ୟରେ ପ୍ରଥମ ମହାଶକ୍ତି ହେଲେ ମା'କାଳୀ ।

ଶ୍ରୀଦୁର୍ଗା ସପ୍ତସତୀରେ ବର୍ଣ୍ଣିତ ଅନ୍ୟ ଏକ ଆଖ୍ୟାୟିକା ଅନୁସାରେ ଶୁମ୍ଭ ଓ ନିଶୁମ୍ଭ ରାକ୍ଷସଦ୍ୱୟ ଦେବତାମାନଙ୍କୁ ପ୍ରପୀଡିତ କରିବାରୁ ଦେବତାମାନେ ମା' ଦୁର୍ଗାଙ୍କର ଶରଣାପନ୍ନ ହେଲେ । ଅଭୟ ଦାୟିନୀ ମା' ଶୁମ୍ଭ ଓ ନିଶୁମ୍ଭଙ୍କ ସେନାପତି ଚଣ୍ଡ ଓ ମୁଣ୍ଡଙ୍କୁ ସଂହାର କରି ଚାମୁଣ୍ଡେଶ୍ୱରୀ ନାମରେ ହେଲେ ନାମିତ । ଏଥିରେ ବ୍ୟଥିତ ହୋଇ ରାକ୍ଷସଦ୍ୱୟ ରକ୍ତବୀର୍ଯ୍ୟ ନାମକ ପରାକ୍ରମୀ ରାକ୍ଷସକୁ ଯୁଦ୍ଧକ୍ଷେତ୍ରକୁ କଲେ ପ୍ରେରଣ । ରକ୍ତବୀର୍ଯ୍ୟ ଏଭଳି ଏକ ବରରେ ଥିଲା ବଳୀୟାନ ଯେ ତା'ର ରକ୍ତବିନ୍ଦୁ ଭୂପତିତ ହେବାକ୍ଷଣି ତହିଁରୁ ଏକାଧିକ ରାକ୍ଷସ ଜନ୍ମନେବେ । ଏହି ପ୍ରବଳ ପରାକ୍ରମୀ ରାକ୍ଷସକୁ ସଂହାର କରିବା ନିମନ୍ତେ ମା' ମହାକାଳୀ ରୂପ ଧାରଣ କରି ରାକ୍ଷସର ଶରୀରରୁ ନିର୍ଗତ ଶୋଣିତକୁ ପାନ କରି ଦେଉଥିବାରୁ ତାହା ଭୂମିରେ ପଡୁନଥିଲା । ଫଳସ୍ୱରୂପ ମା' ମହାକାଳୀ ଅନାୟାସରେ ରାକ୍ଷସ ରକ୍ତବୀର୍ଯ୍ୟଙ୍କୁ କଲେ ନିଧନ । ପରେ ପରେ ମା' ଶୁମ୍ଭ ଓ ନିଶୁମ୍ଭକୁ ମଧ୍ୟ ବିନାଶ କଲେ । ରଣକ୍ଷେତ୍ରରେ ମା' କାଳୀ ଏଭଳି ଭାବରେ କ୍ରୋଧାନ୍ୱିତା ହୋଇଥିଲେ ଯେ ଅସୁର ସଂହାର ପରେ ମଧ୍ୟ ତାଙ୍କର ଉଗ୍ର ରୂପରେ ଘଟିଲା ନାହିଁ ପରିବର୍ତ୍ତନ । ଶେଷରେ ଦେବତାମାନେ ମା' ମହାକାଳୀଙ୍କୁ ଶାନ୍ତ କରାଇବା ନିମନ୍ତେ ଅନନ୍ୟୋପାୟ ହୋଇ ମହାଦେବଙ୍କର ହେଲେ ଶରଣାପନ୍ନ । ଦେବତାମାନଙ୍କୁ ଆଶ୍ୱସ୍ତ କରିବା ସହିତ ମା'ଙ୍କର କ୍ରୋଧ ଜର୍ଜରିତା ଉଗ୍ର ମୂର୍ତ୍ତିକୁ ଶାନ୍ତ କରାଇବା ନିମନ୍ତେ, ଶଙ୍କର ମା'ଙ୍କର ଗନ୍ତବ୍ୟ ପଥରେ କଲେ ଶୟନ । ଫଳସ୍ୱରୂପ ଶିବଙ୍କ ବକ୍ଷରେ ମା'ଙ୍କର ପଦପାତ ହେବାକ୍ଷଣି ମା' ଜିଭ କାମୁଡିବା ସହିତ ଉଗ୍ର ମୂର୍ତ୍ତି ତ୍ୟାଗ କରି ଶାନ୍ତ ମୂର୍ତ୍ତି କଲେ ଧାରଣ । ଧ୍ୱଂସ ମୁଖରୁ ସୃଷ୍ଟି ହେଲା ରକ୍ଷା । ଦେବତାମାନେ ହେଲେ ଆନନ୍ଦିତ ।

**ମା' କାଳୀଙ୍କର ସ୍ୱରୂପ :** ଦଶ ମହାବିଦ୍ୟାମାନଙ୍କ ମଧ୍ୟରେ ସବୁଠାରୁ ଉଗ୍ର ଏବଂ ଭୟଙ୍କର ରୂପରେ ପ୍ରକଟିତ ହୋଇଥିଲେ ମା' କାଳୀ । ମା' କାଳୀଙ୍କ ଶରୀରର ବର୍ଣ୍ଣ କୃଷ୍ଣବର୍ଣ୍ଣ । ଦନ୍ତପଙ୍କ୍ତି ଭୟାନକ । କୁଚଯୁଗଳ ବୃହଦାକାର । ଆରକ୍ତ ନୟନ ଯୁଗଳ । ମୁକୁଳିତ କେଶ । ଗଳାରେ ନର ମୁଣ୍ଡମାଳ । ଲୋଳ ଜିହ୍ୱା ସତେଯେପରି ସମସ୍ତ ସୃଷ୍ଟି ସମ୍ଭାରକୁ କରିଦେବ ଉଦରସ୍ଥ । ଛିନ୍ନ ହସ୍ତମାନଙ୍କ ଦ୍ୱାରା କଟିଦେଶ ଆବୃତ । କଟିଦେଶ ବ୍ୟତୀତ ସର୍ବାଙ୍ଗ ଥିଲା ଅନାବୃତ । ଚତୁର୍ଭୁଜରେ ମା' ହୋଇଥିଲେ ଆବିର୍ଭୂତା । ବାମପଟ ଏକ ହସ୍ତରେ ଛିନ୍ନ ମସ୍ତକ ଶୋଭାପାଉଥିଲା ବେଳେ ଅନ୍ୟ ହସ୍ତରେ ଧାରଣ କରିଥିଲେ ଖର୍ପର । ଦକ୍ଷିଣ ପଟ ଉଭୟ ହସ୍ତ ଅଭୟ ଏବଂ ବରଦ ମୁଦ୍ରାରେ ଶୋଭିତ ହୋଇ ସାଧକ ତଥା ଉପାସକମାନଙ୍କ ମନ ମଧ୍ୟରେ ସୃଷ୍ଟି କରୁଥିଲା ଆଶ୍ୱାସନା । ଭୂମିରେ ଶୟନ କରିଥିବା ଶିବଙ୍କ

ଶରୀର ଉପରେ ଥିଲା ମା'ଙ୍କ ପଦଯୁଗଳ । ମହାଦେବଙ୍କ ଶରୀର ଉପରେ ଦଣ୍ଡାୟମାନ ଅବସ୍ଥାରେ ମା'ଙ୍କର ଏଭଳି ଉଗ୍ର ରୂପ ଯେକେହି ଦର୍ଶନ କଲେ ତା'ର ମନ ମଧ୍ୟରେ ସଞ୍ଚାର ହେବ ଭୀତି ।

**ତାତ୍ତ୍ୱିକ ଦୃଷ୍ଟିରେ ମା'ଙ୍କ ଶରୀର** : ମା'ଙ୍କର ବର୍ଣ୍ଣ ହେଉଛି କୃଷ୍ଣ ବର୍ଣ୍ଣ । ଅନ୍ୟ ଯେକୌଣସି ବର୍ଣ୍ଣ ବିକୃତ ହୋଇପାରେ କିମ୍ବା ରୂପାନ୍ତରିତ ହୋଇପାରନ୍ତି କିନ୍ତୁ କୃଷ୍ଣବର୍ଣ୍ଣ ସଦା ଅବିକୃତ । ଏହି ବର୍ଣ୍ଣ ରୂପାନ୍ତରିତ ହେବା ସମ୍ଭବ ନୁହେଁ । ଅନ୍ୟ ଏକ ଦୃଷ୍ଟିରୁ ବିଚାର କଲେ ସବୁ ବର୍ଣ୍ଣ ବା ରଙ୍ଗକୁ ଗ୍ରହଣ କରିନେଇ ପ୍ରତିଫଳିତ ନ କରୁଥିବାରୁ ମା' କାଳୀଙ୍କର ବର୍ଣ୍ଣ ହେଉଛି କଳା । ମା' କାଳୀଙ୍କର କେଶ ମୁକ୍ତୁଳିତ । କେଶ ହେଉଛି ମାୟାର ପ୍ରତୀକ । ମା' ସମସ୍ତଙ୍କ ଉପରେ ମାୟା ବିସ୍ତାର କରିଥାନ୍ତି । ସମସ୍ତ ଜୀବ ମାୟାର ଅଧୀନ । ପ୍ରତ୍ୟେକ ପ୍ରାଣୀ ମାୟାରଜ୍ଜୁରେ ବନ୍ଧନଯୁକ୍ତ । ତେଣୁ ସପ୍ତସତୀ ଚଣ୍ଡୀରେ କୁହାଯାଇଛି । ''ସମ୍ମୋହିତଂ ଦେବୀ ସମସ୍ତ ମେତତ, ତଂ ବୈ ପ୍ରପନ୍ନା ଭୁବି ମୁକ୍ତି ହେତୁଃ ।'' କେଶ ଶବ୍ଦକୁ ବ୍ୟୁତ୍ପତ୍ତି କଲେ ଜଣାଯାଏ ଯେ– କ୍+ଅ+ଈଶ= କେଶ । ଏଠାରେ କ ଅର୍ଥ ବ୍ରହ୍ମା, ଅ ର ଅର୍ଥ ବିଷ୍ଣୁ ଏବଂ ଈଶ ହେଉଛନ୍ତି ମହେଶ । ଏହି ତ୍ରିଦେବ ଶକ୍ତିମୟୀଙ୍କର ମାୟା ଶକ୍ତି ବଳରେ ରଜଗୁଣରେ କରୁଛନ୍ତି ସୃଷ୍ଟି, ସ୍ୱଗୁଣରେ କରୁଛନ୍ତି ପରିପାଳନ ଏବଂ ତମ ଗୁଣରେ କରୁଛନ୍ତି ସଂହାର । ସାଧକ ବା ଶାକ୍ତ ଉପାସକଗଣ ମା' କାଳୀଙ୍କର ଉପାସନ କରି ମାୟା ବନ୍ଧନରୁ ହୋଇଥାନ୍ତି ମୁକ୍ତ ।

ମା'ଙ୍କର କଣ୍ଠଦେଶରେ ଯେଉଁ ୪୯ ଗୋଟି ନରମୁଣ୍ଡମାଳ ଶୋଭା ପାଉଥାଏ ତାହା ହେଉଛି ୪୯ଟି ଅକ୍ଷର ତତ୍ତ୍ୱ । ଆମର ବର୍ଣ୍ଣମାଳା ସମୁଦାୟ ହେଉଛି ୪୯ । ଆମ କଣ୍ଠଦେଶରୁ ଯେଉଁ ଶକ୍ତି ବଳରେ ଏହି ଶବ୍ଦମାନ ସ୍ଫୁରଣ ହୋଇଥାନ୍ତି ସେ ଶକ୍ତି ମା' ପ୍ରଦାନ କରିଥାନ୍ତି । ଅନ୍ୟ ଏକ ଦୃଷ୍ଟିକୋଣରୁ ବିଚାର କଲେ ଏହି ମୁଣ୍ଡମାଳ ଜଗତକୁ ଶିକ୍ଷା ପ୍ରଦାନ କରିଥାନ୍ତି ଯେ ଜୀବନକୁ ସତ ପଥରେ ପରିଚାଳିତ ନ କରାଇଲେ ବିନାଶ ଅବଶ୍ୟମ୍ଭାବୀ । ମନୁଷ୍ୟ ଇଚ୍ଛାକଲେ ବୁଦ୍ଧି ଓ ବିବେକର ସହାୟତାରେ ଅତିମାନବ ସ୍ତରକୁ ଉନ୍ନୀତ ହୋଇପାରେ କିମ୍ବା କୁବୁଦ୍ଧିର ବଶବର୍ତ୍ତୀ ଓ ଇନ୍ଦ୍ରିୟାସକ୍ତ ହୋଇ ୪୯ ଗୋଟି କଟାମୁଣ୍ଡ ପରି ବିନାଶକୁ ଆମନ୍ତ୍ରଣ କରିପାରେ ।

ମା'ଙ୍କର ଅନାବୃତ ଶରୀରର ତାତ୍ପର୍ଯ୍ୟ ହେଉଛି ମା' ମାୟା ବଳରେ ଜଗତକୁ ଆଚ୍ଛନ୍ନ କରି ରଖିଛନ୍ତି । ସମସ୍ତ ଜୀବ ମାୟାରେ ବଶୀଭୂତ । ମାୟା ସବୁ ପ୍ରାଣୀଙ୍କୁ ଆଚ୍ଛନ୍ନ କରି ରଖିଅଛି । ଆମ୍ଭମାନଙ୍କର ଶରୀର ମାୟାଦ୍ୱାରା ଆବୃତ୍ତ । ଜୀବ ହେଉଛି ମାୟାଧୀନ । ମା' କାଳୀ ହେଉଛନ୍ତି ମାୟାର ଅଧିଶ୍ୱରୀ । ମା'ଙ୍କ ଶରୀର ମାୟାର ଆବରଣରୁ ମୁକ୍ତ । ପରମାତ୍ମା ପରମେଶ୍ୱର ମା' ଶକ୍ତିମୟୀଙ୍କର ମାୟା ଶକ୍ତି ସହାୟତାରେ ଏ ସୃଷ୍ଟିକୁ କରିଛନ୍ତି ସଂରଚନା । ମା'ଙ୍କ ହସ୍ତରେ ଶୋଭାପାଉଥିବା ଖର୍ପର ହେଉଛି ଜ୍ଞାନର ପ୍ରତୀକ । ତେଣୁ ଆମେ ଜ୍ଞାନ ରୂପୀ ଖଡ୍ଗ ବା ଖର୍ପର ସାହାଯ୍ୟରେ ମାୟାର ଆବରଣକୁ ଛିନ୍ନ କରିବାକୁ ହେବ । ଶରୀରକୁ ଆବୃତ୍ତ କରି ରଖିଥିବା ମାୟାକୁ ଦିବ୍ୟଜ୍ଞାନ ବଳରେ ଦୂରୀଭୂତ କରି ମାୟା କବଳରୁ ଶରୀରକୁ ଅନାବୃତ ରଖିବାକୁ ହେବ । ଜୀବର ରହିଛି ଦେହଜ୍ଞାନ । ଗୋପାଙ୍ଗନାମାନଙ୍କ ଦେହଜ୍ଞାନକୁ ଦୂରୀଭୂତ କରିବା ନିମନ୍ତେ ରସରାଜ ରସିକେନ୍ଦ୍ର ମଉଳି ଶ୍ରୀକୃଷ୍ଣ ରଚନା କରିଥିଲେ ବସ୍ତ୍ରହରଣ ଲୀଳା । ଗୋପୀମାନେ ସଂପୂର୍ଣ୍ଣ ଭାବେ ଅନାବୃତ୍ତ ଶରୀରରେ ଯମୁନା ଜଳର ଉପରକୁ ଆସି ନିଜ ନିଜର ବସ୍ତ୍ର ଗ୍ରହଣକରି ଶରୀରକୁ କରିଥିଲେ ଆବୃତ୍ତ । ଏହା ଥିଲା ମହାମିଳନ ରୂପକ ମହାରାସର ଆଦ୍ୟସୋପାନ । ପରମାତ୍ମାଙ୍କ ସହିତ ମିଳିତ ହେବାପାଇଁ ଦେହଜ୍ଞାନ ସଂପୂର୍ଣ୍ଣ ଭାବେ ଦୂରୀଭୂତ ହେବା ଆବଶ୍ୟକ ।

ମା' କାଳୀ ଶିବଙ୍କ ଉପରେ ଦଣ୍ଡାୟମାନ ହେବା ଦୃଶ୍ୟର ତାତ୍ପର୍ଯ୍ୟ ହେଉଛି ଯେ ଜୀବକୁ ପରମାତ୍ମାଙ୍କ ନିକଟରେ ପ୍ରପନ୍ନ ହେବାକୁ ହେବ । ମା'ଙ୍କ ଉଗ୍ର ମୂର୍ତ୍ତିକୁ ଶାନ୍ତ କରାଇବା ଉଦ୍ଦେଶ୍ୟରେ ଶଙ୍କର ମା'ଙ୍କ ଗନ୍ତବ୍ୟପଥରେ ଶୟନ କରିଥିଲେ । ମା' ଶିବଙ୍କ ଉପରେ ପଦପାତ କାରଣରୁ ଅନୁତାପାନଳରେ ଦଗ୍ଧିଭୂତା ହୋଇ ଜିଭ କାମୁଡି

ପକାଇଥିଲେ । କାଳ ଯାହାଙ୍କର ଅଧୀନ ସେହି ମହାକାଳୀଙ୍କର ଚରଣ କମଳରେ ଜୀବନକୁ ଶରଣାପନ୍ନ ହେବାକୁ ହେବ । ଯଦ୍ୱାରା ମା'ଙ୍କ କୃପାବାରି ଲାଭ କରିବାକୁ ଜୀବ ସମର୍ଥ ହୋଇପାରିବ । ସେଥିପାଇଁ ମା'ଙ୍କ ଚରଣ କମଳରେ ଆଶିଷ ଭିକ୍ଷାକରି ସନ୍ତାନ ପ୍ରାର୍ଥନା କରିଥାଏ –

''ଶରଣାଗତ ଦୀନାର୍ତ୍ତ ପରିତ୍ରାଣ ପରାୟଣେ,
ସର୍ବସ୍ୟାର୍ତ୍ତେ ହରେଦେବୀ ନାରାୟଣୀ ନମୋସ୍ତୁତେ ।''

ଦଶମହାବିଦ୍ୟାମାନଙ୍କ ମଧ୍ୟରେ ପ୍ରଥମ ମହାବିଦ୍ୟା ଭାବେ ଉପାସିତା ମା' କାଳୀ ତନ୍ତ୍ରଶାସ୍ତ୍ର ଅନୁଯାୟୀ ପାଞ୍ଚଗୋଟି ରୂପରେ ତାନ୍ତ୍ରିକ ସାଧକ ଏବଂ ଉପାସକମାନଙ୍କ ଦ୍ୱାରା ହୋଇଥାନ୍ତି ଆରାଧିତା । ସେହି ପାଞ୍ଚଗୋଟି ସ୍ୱରୂପ ହେଲେ ଶ୍ମଶାନକାଳୀ (ଦକ୍ଷିଣକାଳୀ) ରଦ୍ରକାଳୀ (କାତ୍ୟାୟନୀ) ଭଦ୍ରକାଳୀ, ସିଦ୍ଧିକାଳୀ ଏବଂ ମହାକାଳୀ । 'ମହାକାଳ ସଂହିତା'ରେ ମହାବିଦ୍ୟା ମା' କାଳୀଙ୍କର ନଅଗୋଟି ରୂପର ରହିଛି ବର୍ଣ୍ଣନା । ଯଥା– ଦକ୍ଷିଣା, ଭଦ୍ରା, ଶିରଶାନ, କାଳ, ଗୁହ୍ୟା, କାମକଳା, ଧନୀ, ସିଦ୍ଧି ଓ ଚଣ୍ଡିକା, ସେହିପରି ଜୟଦ୍ରଥ ଯାମଳାରେ କାଳୀଙ୍କର ଏଗାରଗୋଟି ରୂପ ସଂପର୍କରେ ରହିଛି ସୂଚନା । ସେମାନେ ହେଲେ–କାଳିକା, ଡମ୍ବର, ରକ୍ଷା, ଇନ୍ଦୀବର, ଧନଦା, ରମଣୀ, ଈଶାନ, ଜୀବ, ବୀର୍ଯ୍ୟ, ପ୍ରଜ୍ଞା ଓ ସପ୍ତାର୍ଣ୍ଣ । ଏହି ନାମମାନଙ୍କର ବୌଦ୍ଧ ତାନ୍ତ୍ରିକ ଦେବତାଙ୍କ ସହିତ ରହିଛି ସାମଞ୍ଜସ୍ୟ । ନୀଳାଚଳ ଧାମରେ ଶ୍ରୀବସ୍ ଖଣ୍ଡଶାଳରେ ପୂଜା ପାଉଥିବା ଶ୍ରୀଜଗନ୍ନାଥଙ୍କୁ ଶାକ୍ତ ଉପାସକମାନେ ଦକ୍ଷିଣକାଳିକା ଭାବରେ ଅଭିହିତ କରିଥାନ୍ତି ।

ଯଥା:–

''ତାରା ସାକ୍ଷାତ୍ ଶୂଳପାଣିଃ ସୁଭଦ୍ରା ଭୁବନେଶ୍ୱରୀ ।
ନୀଳାଦ୍ରୌତୁ ଜଗନ୍ନାଥଃ ସାକ୍ଷାତ୍ ଦକ୍ଷିଣକାଳିକା ।''

ଯୁଗେଯୁଗେ ସନ୍ଥପାଳନ ଏବଂ ଦୁଷ୍ଟଦଳନ ନିମନ୍ତେ ଶକ୍ତିମୟୀ ମା' ବିଭିନ୍ନ ରୂପ ଧାରଣକରି ଧରାପୃଷ୍ଠରେ ଅବତୀର୍ଣ୍ଣ ହୋଇଥାନ୍ତି । ମହିଷାସୁର ରୂପୀ ରାକ୍ଷସମାନଙ୍କୁ ବିନାଶ କରିବା ପାଇଁ ଚଣ୍ଡୀ, ଚାମଣ୍ଡା, ଚଉଷଠୀ ଯୋଗିନୀ ଓ ନବକୋଟୀ କାତ୍ୟାୟନୀଙ୍କ ରୂପରେ ମା' ହୋଇଥାନ୍ତି ଆବିର୍ଭୂତା । ତାଙ୍କର ମାୟା ସାଧାରଣ ବ୍ୟକ୍ତିବିଶେଷ ପକ୍ଷରେ ଅଗୋଚର । ଦଶ ମହାବିଦ୍ୟା ଦେବୀଙ୍କର ମୁଖ୍ୟ ଅବତାର ଅଟେ । ଯେତେବେଳେ ଦେବୀ ସୌନ୍ଦର୍ଯ୍ୟର ଆଧାର ହୁଅନ୍ତି ସେ ମହାଲକ୍ଷ୍ମୀ ନାମରେ ହୁଅନ୍ତି ଅଭିହିତା । ବିଦ୍ୟା ଓ ଦିବ୍ୟ ଜ୍ଞାନ ପ୍ରଦାୟିନୀ ଭାବେ ସେ ମହାସରସ୍ୱତୀ ରୂପରେ ହୁଅନ୍ତି ପୂଜିତା । ଦୁର୍ଗତିକାଳରେ ଶକ୍ତିମୟୀ ରୂପରେ ପ୍ରକଟିତା ହେଲେ ତାଙ୍କ ନାମ ହୁଏ ଦୁର୍ଗା ଏବଂ ଦୁଷ୍ଟ ସଂହାର ତଥା ପ୍ରଳୟ କାଳରେ ଭୟଙ୍କର ରୂପଧାରଣ କରି ମହାକାଳୀ ନାମରେ ହୁଅନ୍ତି ପରିଚିତା । ତ୍ରିଗୁଣମୟୀ ମା' କାଳୀହିଁ ପରମ ମଙ୍ଗଳମୟୀ । ସେ ଜୀବ ଜଗତର କଲ୍ୟାଣ କାରିଣୀ । ସେ ଏ ବିଶ୍ୱକୁ ମୋହିତ କରନ୍ତି । ଏହି ସଂସାରକୁ ମଧ୍ୟ ସୃଷ୍ଟି କରନ୍ତି । ତେଣୁ କଳିହତ ମାନବ ସେହି ମହାକାଳଙ୍କ ଶକ୍ତି ସ୍ୱରୂପା ମା'ମହାକାଳୀଙ୍କ ବନ୍ଦନା ଗାନରେ ଶତମୁଖ ହୋଇ ତାଙ୍କର ଶରଣାପନ୍ନ ହେଲେ ଜୀବନର ସବୁ ଦୁଃଖ ଶୋକ ଦୂରୀଭୂତ ହେବା ସଙ୍ଗେ ସଙ୍ଗେ ମା'ଙ୍କର ଆଶିଷରେ ଜୀବନ ହୋଇଉଠିବ ମଧୁମୟ ଏବଂ ମଙ୍ଗଳମୟ ।

ଶ୍ରୀକ୍ଷେତ୍ର ବିହାର, ଆଇଗିଣିଆ
ପ୍ଲଟ୍ ନଂ–୬, ଫେଜ ନଂ–୨
ଭୁବନେଶ୍ୱର – ୭୫୧୦୧୯

❖ ❖ ❖

# ଦିବ୍ୟଦ୍ରଷ୍ଟା ଓ ଦିବ୍ୟସନ୍ଥ : ସନ୍ଥକବି ଭୀମଭୋଇ

ମନୀଷା ରାୟ

'ରୂପରେଖ ନାହିଁ ହେ ଶୂନ୍ୟଦେହୀ...' ଏହି ଭଜନଟି ଯେତେବେଳେ ଉତ୍କଳ ମାଟିର ପାଣି ପବନରେ କୀର୍ତ୍ତନ ଓ ଖଞ୍ଜଣୀ ନାଦରେ ପ୍ରକମ୍ପିତ ହୋଇଯାଏ ସେତେବେଳେ ସ୍ୱତଃପ୍ରବୃତ୍ତ ଭାବେ ଉତ୍କଳବାସୀଙ୍କ ମନ ଆଇନାରେ ଉଙ୍କିମାରେ ଜଣେ ମହାନ୍ ସନ୍ଥଙ୍କ ଛବି । ଯିଏ ଉତ୍କଳର ପୁରପଲ୍ଲୀରେ ଅଲେଖ ଧର୍ମର କବି ଭାବେ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିଥିଲେ । ତାଙ୍କ କବିତ୍ୱର ପରାକାଷ୍ଠା ଥିଲା ଅତ୍ୟନ୍ତ ଦିବ୍ୟ ଓ ଅନନ୍ୟ । ତାଙ୍କ ରଚିତ ରଚନାବଳୀର ପ୍ରତ୍ୟେକ ଶବ୍ଦର ଛନ୍ଦେ ଛନ୍ଦେ ପ୍ରସ୍ଫୁଟିତ ହେଉଥିଲା ନୈସର୍ଗିକ ଧାର୍ମିକତା । ଅଲେଖ ଧର୍ମର ପ୍ରସାର ପ୍ରଚାର ମାଧ୍ୟମରେ ସେ ମାନବବାଦର ଗୂଢ଼ତତ୍ତ୍ୱକୁ ଅତି ସରଳ ଓ ସୁନ୍ଦର ଭାବରେ ପରିପ୍ରକାଶ କରୁଥିଲେ । ତତ୍‌ସହିତ ମହିମା ଧର୍ମର ତତ୍ତ୍ୱ ଓ ଦର୍ଶନର ଉନ୍ମେଷ ଘଟିଥିଲା ।

ଊନବିଂଶ ଶତାବ୍ଦୀରେ, ଓଡ଼ିଶା ରାଜ୍ୟରେ ଜଣେ ମହାନ୍ ସନ୍ଥକବିଙ୍କର ଆବିର୍ଭାବ ହୋଇଥିଲା । ତାଙ୍କ ନାମ ଭୀମଭୋଇ । ଉତ୍କଳ ମାଟିର କନ୍ଧ ଜନଜାତି ସମ୍ପ୍ରଦାୟରେ ସେ ଜନ୍ମଗ୍ରହଣ କରିଥିଲେ । ଐତିହାସିକ ମାନ୍ୟତା ଅନୁଯାୟୀ ୧୮୫୦ରେ ସେ ସମ୍ବଲପୁର ଜିଲ୍ଲାର ରେଢ଼ାଖୋଲରେ ଜନ୍ମଗ୍ରହଣ କରିଥିଲେ ।

ଭୀମଭୋଇ ଏକାଧାରରେ ଥିଲେ ଜଣେ ସନ୍ଥ, ବିଶିଷ୍ଟ ଦାର୍ଶନିକ, କବି, ଦିବ୍ୟଦ୍ରଷ୍ଟା ସୁପୁରୁଷ ତଥା ମହିମା ଧର୍ମର ପ୍ରଚାରକ । ପ୍ରାୟତଃ ତାଙ୍କ ବ୍ୟକ୍ତିତ୍ୱ ଶୂନ୍ୟ ସମ୍ପ୍ରଦାୟ ସମ୍ପ୍ରଦାୟରେ ମହିମାନ୍ୱିତ ଥିଲା । ଆହୁରି ମଧ୍ୟ ମହିମା ଧର୍ମର ଦାର୍ଶନିକ ଦୃଷ୍ଟିକୋଣ ଉପରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । ସେ ମହିମା ଧର୍ମ ଉପରେ ଅନେକ କାଳଜୟୀ ରଚନାବଳୀ ସୃଷ୍ଟି କରି ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରି ଚର୍ଚ୍ଚାର କେନ୍ଦ୍ରବିନ୍ଦୁ ପାଲଟି ଯାଇଥିଲେ । ତାଙ୍କର ପ୍ରତ୍ୟେକଟି ରଚନାବଳୀରେ ମାନବ ସମାଜକୁ ପ୍ରବର୍ତ୍ତାଇବା ଭଳି ଦିବ୍ୟବାଣୀ ଓ ଦିଗ୍‌ଦର୍ଶନ ଭରି ରହିଥିଲା । ପ୍ରକୃତରେ କହିବାକୁ ଗଲେ ଭୀମଭୋଇ ସତ୍ୟ ମହିମା ଧର୍ମର ସଂସ୍ଥାପକ ମହିମା ଗୋସାଇଁଙ୍କର ଜଣେ ପରମ ଭକ୍ତ ଥିଲେ । ଯାହାଙ୍କୁ ଭାରତୀୟ ଧାର୍ମିକ ପରମ୍ପରାର କର୍ଣ୍ଣଧାର କହିଲେ ଅତ୍ୟୁକ୍ତି ହେବନାହିଁ । ଏଇ ମହାନ୍ ସନ୍ଥଙ୍କ ଦ୍ୱାରା ଉଦ୍‌ଘୋଷିତ ପ୍ରତ୍ୟେକ ଦିବ୍ୟବାଣୀରେ ବିଭିନ୍ନ ପ୍ରକାର ସାମାଜିକ ସମ୍ପର୍କର ଗୂଢ଼ତତ୍ତ୍ୱରେ ଲୁଚି ରହିଥିବା ସମ୍ମାନସୂଚକ ମହତ୍ତ୍ୱ ସେ ପରିପ୍ରକାଶ କରୁଥିଲେ । ଯଥା– ଗୁରୁଶିଷ୍ୟର ସମ୍ପର୍କ, ସ୍ୱାମୀ ତଥା ସ୍ତ୍ରୀର ସମ୍ପର୍କ । ସେସମୟରେ ଭୀମଭୋଇଙ୍କ ଦ୍ୱାରା ରଚିତ ଭଜନ, କୀର୍ତ୍ତନନ ଓ ଗୀତର 'ବୋଲି' ଉତ୍କଳର ଅଗଣିତ ଜନମାନସ ଦ୍ୱାରା ବେଶ୍ ଆଦୃତ ହୋଇଥିଲା । ଯେତେବେଳେ ସେ ଭଜନ, କୀର୍ତ୍ତନର ତାଳେ ତାଳେ ଖଞ୍ଜଣୀ ବାଦନ କରୁଥିଲେ ସେତେବେଳେ ଲୋକମାନଙ୍କର କରତାଳିରେ ଓ ବୋଲିରେ ପରିବେଶ ମୁଖରିତ ହୋଇଉଠିଥିଲା ।

ଭୀମଭୋଇଙ୍କ ପରିବାର ଉତ୍କଳର କନ୍ଧ ଆଦିବାସୀ ଜନଜାତି ସମ୍ପ୍ରଦାୟର ହୋଇଥିବାରୁ ତାଙ୍କ ବାଲ୍ୟବସ୍ଥା ଖୁବ୍ ନୈରାଶ୍ୟଜନକ ପରିସ୍ଥିତିରେ ଅତିବାହିତ ହୋଇଥିଲା ।

ପ୍ରାୟତଃ ସେମାନଙ୍କ ପରିବାର କ୍ଷେତବାଡ଼ି ଉପରେ ନିର୍ଭର କରି ପରିବାର ପ୍ରତିପୋଷଣ କରୁଥିଲେ । ସୁତରାଂ ଭୀମଭୋଇଙ୍କ ପ୍ରାରମ୍ଭିକ ଜୀବନର ଅୟମାରମ୍ଭ ଚାଷବାସ ସହିତହିଁ ଜଡ଼ିତ ଥିଲା । ଜନ୍ମରୁ ଅନ୍ଧ ଥିବା ଭୀମଭୋଇ ଯେତେବେଳେ ଖୁବ୍ ଛୋଟ ଥିଲେ ସେତେବେଳେ ତାଙ୍କ ପିତାଙ୍କର ଦେହାନ୍ତ ହୋଇଯାଇଥିଲା । ପିତାଙ୍କ ମୃତ୍ୟୁ ପରେ ତାଙ୍କ ମାଆ ଅନ୍ନପୂର୍ଣ୍ଣା ଦେବୀ ପୁନର୍ବିବାହ କରିଥିଲେ ଏବଂ ସେ ଦ୍ୱିତୀୟ ସ୍ୱାମୀଙ୍କର ସନ୍ତାନର ମାଆ ହୋଇଥିଲେ ।

କହିବା ବାହୁଲ୍ୟ ଯେ, ଭୀମଭୋଇ ଜଣେ ସନ୍ଥ ଥିବା ସହ ଜଣେ ଜନପ୍ରିୟ କବି, ସଙ୍ଗୀତକାର ଓ ବିଶିଷ୍ଟ ଗାୟକ ମଧ୍ୟ ଥିଲେ । ମହିମା ଧର୍ମ ଦର୍ଶନ ଉପରେ ଆଧାରିତ ମାନବବାଦର ପରିଭାଷା ଏବଂ ବିଶ୍ୱର ମୁକ୍ତି ବା ମୋକ୍ଷ ପ୍ରାପ୍ତି ତାଙ୍କ କାବ୍ୟ କବିତାର ପ୍ରମୁଖ ବିଷୟବସ୍ତୁ ଥିଲା । ତେଣୁ ସେ ଜୀବାତ୍ମାର ମୋକ୍ଷପ୍ରାପ୍ତିର ବନ୍ଦନା କରିବାକୁ ଯାଇ ଗାଇ ଉଠିଥିଲେ–

'ମୋ ଜୀବନ ପଛେ ନର୍କେ ପଡ଼ିଥାଉ
ଜଗତ ଉଦ୍ଧାର ହେଉ ।'

ତାଙ୍କର ଏହି ଉକ୍ତି ଅଜ୍ଞାନରୁ ଜ୍ଞାନକୁ, ଅନ୍ଧକାରରୁ ଆଲୋକକୁ ଏବଂ ମୃତ୍ୟୁରୁ ଅମରତ୍ୱ ପ୍ରାପ୍ତି ପର୍ଯ୍ୟନ୍ତ ପଥପ୍ରଦର୍ଶନ କରିବାର ଆସ୍ପର୍ଦ୍ଧା ରଖିଥିଲା । ତାଙ୍କ ସମୟରେ ସାମାଜିକ, ଆର୍ଥିକ, ପ୍ରତିକୂଳ ପରିସ୍ଥିତିର ମୁକାବିଲା କରିବା ପାଇଁ ଏହି ସବୁ ଦିବ୍ୟବାଣୀ ଥିଲା ବାସ୍ତବ ପ୍ରତିବିମ୍ବ ତତ୍ ସହିତ ସାମାଜିକ ଜୀବନରୁ ବଞ୍ଚିତ ଥିବା ବ୍ୟକ୍ତିବିଶେଷଙ୍କର ଉତ୍ଥାନ ପ୍ରାପ୍ତି ପାଇଁ ଥିଲା ତାଙ୍କ ଆତ୍ମସମର୍ପଣର ଭାବ । ଏହି ମାର୍ମିକ ମାନବବାଦୀ ଉକ୍ତିଟିର ଇଂରାଜୀ ଅନୁବାଦ କରି ବିଶିଷ୍ଟ ସାହିତ୍ୟିକ ସୀତାକାନ୍ତ ମହାପାତ୍ର ଲେଖିଥିଲେ–

"Boundless in the anguish and Trisery of the living, Who can see it and tolerate, Let my soul be condemned to hell, But let the universe be redeemed."

ଯଦିଓ ଭୀମଭୋଇ ଗୃହସ୍ଥର ସବୁ ଧର୍ମ ସୁଚାରୁରୂପେ ପାଳନ କରୁଥିଲେ, ଯାହା ତାଙ୍କ ଜୀବନର ପରମ ଉପଲବ୍ଧ ଥିଲା, ତଥାପି ଗୃହସ୍ଥ ଧର୍ମକୁ ତ୍ୟାଗ ନ କରି ସେ ନିଜ ଜୀବନରେ ଏକନିଷ୍ଠ ସାଧନାରେ ବ୍ରତୀ ହୋଇ ସିଦ୍ଧି ପ୍ରାପ୍ତି କରିଥିଲେ । ନିଜ ସିଦ୍ଧିପ୍ରାପ୍ତି ସମ୍ପର୍କରେ ଜଗତବାସୀଙ୍କୁ ଅବଗତ କରାଇବା ପାଇଁ ସେ ଅମୂଲ୍ୟ ଦିବ୍ୟବାଣୀ ଓ ଜ୍ଞାନ ବିତରଣ କରିଥିଲେ । ଯାହାକୁ ସାଧାରଣ ଜନତା ହେଜ କରିବା ତ ଦୂରର କଥା କିନ୍ତୁ ଅଜ୍ଞାନତା ବଶତଃ ଏହାକୁ ସମାଲୋଚନା କରିବାକୁ କୁଣ୍ଠିତ ମଧ୍ୟ ହେଉନଥିଲେ । ସେମାନଙ୍କ ନୈତିକ ଭାବନା ଓ ଦୃଷ୍ଟିକୋଣ ଥିଲା ଅତ୍ୟନ୍ତ ନ୍ୟୂନ ଧରଣର । ମାତ୍ର ଭୀମଭୋଇଙ୍କ ଅନ୍ତର୍ଦୃଷ୍ଟିର ତର୍ଜମା କଲେ ବହୁବାର ଦେଖିବାକୁ ମିଳେ ଅସରନ୍ତି ଦିବ୍ୟଦୃଷ୍ଟିର ଜ୍ଞାନବୋଧକ ସମ୍ଭାର । ମାନବ ସମାଜକୁ ସେ ଯେଉଁ ଗୃହସ୍ଥ ଧର୍ମର ଶିକ୍ଷା ପ୍ରଦାନ କରିଯାଇଛନ୍ତି, ତାହା ହେଉଛି ଏକ ପ୍ରଶସ୍ତ ଆଧ୍ୟାତ୍ମିକ ସାଧନାର ମାର୍ଗ । ଯାହା ସେ ଜଣେ ଦିବ୍ୟଦ୍ରଷ୍ଟା ଭାବେ ସ୍ୱଚକ୍ଷୁରେ ଦେଖିଥିଲେ କହିଲେ ଶ୍ରେୟ ହେବ ।

ସାଂସାରିକ ବନ୍ଧନରୁ ମୁକ୍ତି ହେବାର ଯେଉଁ ମହାର୍ଘ ପଥ ସେ ପ୍ରଦର୍ଶନ କରିଯାଇଛନ୍ତି । ବାସ୍ତବିକ ତାହା ଅତ୍ୟନ୍ତ ଦୁର୍ଲଭ ଓ ବିରଳ । କାରଣ ଗୃହସ୍ଥମାନଙ୍କ ମୁକ୍ତିର ପ୍ରଦର୍ଶକ ସେ ଥିଲେ । ନିଜେ ଭୀମଭୋଇ ମହିମା ଧର୍ମ ଦୀକ୍ଷା ନେଇ ବନ୍ଦ ଥିବା ମୁକ୍ତିର ପଥକୁ ଖୋଲି ଦେଇଥିଲେ । ସୁତରାଂ ଏଥିରୁ ଅନୁମେୟ ଯେ, କେତେ ବୃହତ୍ ଥିଲା ତାଙ୍କ ଜ୍ଞାନର ପରିଧି ଏବଂ ଆତ୍ମା ପରମାତ୍ମାର ନିବିଡ଼ ସମ୍ପର୍କ? ମୋଟ ଉପରେ କହିବାକୁ ଗଲେ ଭୀମଭୋଇଙ୍କ ଜୀବନ ଦର୍ଶନ ଥିଲା ସମ୍ପୂର୍ଣ୍ଣ ଭିନ୍ନ । ତତ୍‌ସହିତ ଜଣେ ସନ୍ଥକବି ହିସାବରେ ସେ ଥିଲେ ଭିନ୍ନରେ ଭିନ୍ନ ଜଣେ ଦିବ୍ୟସନ୍ଥ ଓ ସୁପୁରୁଷ । ଯାହାର ଜ୍ୱଳନ୍ତ ଉଲ୍ଲେଖ ତାଙ୍କ ରଚିତ 'ସ୍ତୁତି ଚିନ୍ତାମଣି'ରେ ଦେଖିବାକୁ ମିଳେ ।

ଭୀମଭୋଇଙ୍କ କହିବାନୁସାରେ ପ୍ରତ୍ୟେକ ଜୀବ ଭିତରେ ବ୍ରହ୍ମ ସ୍ଥିତ ଏବଂ ଅନିତ୍ୟ ବ୍ରହ୍ମକୁ ଖୋଜିବାର ଆଦୌ ପ୍ରୟୋଜନ ନାହିଁ । ସେ ସର୍ବଦା ସତ୍ୟନିଷ୍ଠ ଥିବାବେଳେ ମିଥ୍ୟାକୁ ଘୃଣିତ କାର୍ଯ୍ୟ ବୋଲି ମତ ପ୍ରକାଶ କରୁଥିଲେ । ସେ କହୁଥିଲେ କର୍ମନିଷ୍ଠ ଓ ସତ୍ୟନିଷ୍ଠ ହେଉଛି ଅସତ୍

କର୍ମକୁ ଦୃଢ଼ ବିରୋଧ କରିବାର କଳା । ଯଦ୍ଵାରା କୁପଥଗାମୀ ଆତ୍ମାର ସୁପଥରେ ପରିଚାଳିତ ହେବାର ଆଗ୍ରହ ଜନ୍ମିବ । ଶାନ୍ତି, ଦୟା ଓ କ୍ଷମାର ମୂର୍ତ୍ତି ଭୀମଭୋଇ ସର୍ବଦା ଅହିଂସାର ବାର୍ତ୍ତା ସମାଜରେ ପ୍ରଚାର କରିଆସୁଥିଲେ । ବାସ୍ତବରେ ଯେଉଁମାନେ ପ୍ରକୃତ ସନ୍ଥ ସେମାନେ ସର୍ବଦା ସହିଷ୍ଣୁ, ବିନୟୀ ଓ କରୁଣାବତାର । ସତ କହିବାକୁ ଗଲେ ଏହି ତିନି ପ୍ରକାର ଦୁର୍ଲଭ ଗୁଣରୁ ସେ ଆଦୌ ବାଦ୍ ପଡ଼ିନଥିଲେ । ପ୍ରକୃତ ସନ୍ଥ ହିସାବରେ ସେ ଥିଲେ ଗର୍ବଶୂନ୍ୟ, ଅହଙ୍କାରଶୂନ୍ୟ । ତାଙ୍କ ଉକ୍ତି ହେଲା, 'ଅଣାକାରକୁ କର ଲକ୍ଷ୍ୟ/ଘୁଞ୍ଚିବ କାଳ ମୃତ୍ୟୁ ଭୟ ।' ସେ ଜାତି ଗୋତ୍ରରେ ଥିବା ଭିନ୍ନତାକୁ ଆଦୌ ପସନ୍ଦ କରୁନଥିଲେ । ତାଙ୍କ ମତରେ କୌଣସି ଜାତି ଉଚ୍ଚ କିମ୍ବା ନୀଚ ନୁହେଁ । ସବୁଠାରୁ ବଡ଼ ହେଲା ମାନବ ଜନ୍ମ । ଜଣେ ଭକ୍ତ ହିସାବରେ ସେ ମୂର୍ତ୍ତି ପୂଜାର ଘୋର ବିରୋଧ ଥିଲେ । ସୁତରାଂ ତାଙ୍କର ଜୀବନ ଦର୍ଶନ ହେଲା, 'ଜାତି ଖୋଜିଲେ କିମ୍ବା ମୂର୍ତ୍ତି ପୂଜିଲେ ମୋକ୍ଷ ପ୍ରାପ୍ତି ନାହିଁ ବା ମୁକ୍ତି ନାହିଁ କିମ୍ବା ମୁକ୍ତି ଖୋଜିଲେ ଜାତି ନାହିଁ ।'

ଯଦିଓ ଈଶ୍ୱରଙ୍କ ସ୍ଥିତି ତାଙ୍କ ଦୃଷ୍ଟିକୋଣରେ ଶୂନ୍ୟ ତଥା ସତ୍ୟବ୍ରହ୍ମ ଥିଲା । ତଥାପି ଈଶ୍ୱରଙ୍କ ସୃଷ୍ଟିରେ ପ୍ରତ୍ୟେକ ସଜୀବ ଓ ନିର୍ଜୀବ ଶରୀରରେ ବ୍ରହ୍ମରୂପୀ ଦେବତା ବାସ କରନ୍ତି ବୋଲି ତାଙ୍କର ଅଟଳ ବିଶ୍ୱାସ ଥିଲା । ତେଣୁ ସେ ସଂସାରୀ ମଣିଷଙ୍କ ଜୀବନକୁ ସୁଧାରିବା ପାଇଁ ସତତ ଚେଷ୍ଟିତ ରହୁଥିଲେ । ମହିମା ଧର୍ମର ଆଦର୍ଶରେ ସର୍ବଦା ଅନୁପ୍ରାଣିତ ଭୀମଭୋଇ ପାର୍ଥିବ ସଂସାର ଜଞ୍ଜାଳରେ ସଂଶ୍ଳିଷ୍ଟ ମୂଢ଼ ଜନତାଙ୍କୁ ସଂସାରରୂପୀ ଅନ୍ଧକାରରୁ ଧର୍ମର ଦ୍ୱାହିଦେଇ ଆଲୋକର ପଥ ଦେଖାଇବା ନିଜ ଜୀବନର ଶ୍ରେୟ ବୋଲି ଭାବି ନେଇଥିଲେ । କାରଣ ତାଙ୍କ କହିବା ହେଲା, 'ଧର୍ମହିଁ ଏକମାତ୍ର ଆଲୋକ । ଯାହାର ପ୍ରଖର ଦୀପ୍ତିରେ ସମାଜରେ ଥିବା କୁସଂସ୍କାର, ଅନ୍ଧବିଶ୍ୱାସ, ସାମାଜିକ ପ୍ରଥା ଭଳି ବ୍ୟାଧିର ଚିର ଅବସାନ ଘଟିବ ଏବଂ ନବସୂର୍ଯ୍ୟ ଅଭ୍ୟୁଦୟର ଆଲୋକବର୍ତ୍ତିକା ସାଜିବ ।'

ପ୍ରାୟତଃ ତାଙ୍କ ରଚିତ ଅନେକଗୁଡ଼ିଏ କାବ୍ୟ, କବିତା ଓ ଗ୍ରନ୍ଥ ଗୁରୁଶିଷ୍ୟ ସମ୍ପର୍କକୁ ନେଇ ଆଧାରିତ ଥିଲା । ଏହା ଉପରେ ଏତେଟା ଗୁରୁତ୍ୱ ଦେବାର ଯଥେଷ୍ଟ କାରଣ ଥିଲା । କାରଣ ତାଙ୍କ ଉକ୍ତିରେ 'ସଦ୍‌ଗୁରୁଙ୍କ ସେବାହିଁ ଈଶ୍ୱର ପ୍ରାପ୍ତିର ଏକମାତ୍ର ବିକଳ୍ପ ପଥ, ତେଣୁ ମୋହମାୟା ଭରା ସାଂସାରିକ ଜୀବନରୁ ମୋକ୍ଷ ପ୍ରାପ୍ତି ଚାହିଁଥିଲେ ସଦ୍‌ଗୁରୁ ସେବା ଅପରିହାର୍ଯ୍ୟ । ଭୀମଭୋଇଙ୍କ ଦୃଷ୍ଟିରେ ଶିଷ୍ୟମାନଙ୍କୁ ମୁକ୍ତିର ମାର୍ଗ ବତାଇ ଦେଉଥିବା ସୁପୁରୁଷହିଁ ପ୍ରକୃତ ଗୁରୁ । ଯିଏ ଶିଷ୍ୟ ଓ ଭଗବାନଙ୍କ ମଧ୍ୟରେ ଉତ୍ତମ ଯୋଗସୂତ୍ର ସ୍ଥାପନକାରୀ ଅଟେ । ତତ୍‌ସହିତ ଶିଷ୍ୟକୁ ଅଜ୍ଞାନରୁ ଜ୍ଞାନକୁ ପ୍ରଭାବିତ କରିବା ସହ ଅନ୍ଧକାରରୁ ଆଲୋକକୁ ବାଟ କଢ଼ାଇ ନେଇଯାଏ । ଭୀମଭୋଇ ଆହୁରି ମଧ୍ୟ କହୁଥିଲେ, 'ସଂସାରରେ ସମସ୍ତଙ୍କୁ ସଦ୍‌ଗୁରୁ ପ୍ରାପ୍ତ ହୁଏନା । ପ୍ରାରବ୍ଧ ଜନ୍ମଫଳ ଓ ଇହକାଳର ଜନ୍ମଫଳର ଶାଶ୍ୱତ ସଂଯୋଗରୁ ସଦ୍‌ଗୁରୁ ପ୍ରାପ୍ତ ହୋଇଥାଏ ।'

ଭୀମଭୋଇ ପ୍ରକୃତପକ୍ଷେ ଥିଲେ ମହିମା ଧର୍ମର ଗୀତି ସୃଜନକାର । ତାଙ୍କ ଦିବ୍ୟବାଣୀରେ ଉନ୍ମେଷ ହେଉଥିଲା ସାମ୍ୟବାଦର ବାର୍ତ୍ତା । ବିଶ୍ୱବାସୀଙ୍କ ଏକତା ରଜ୍ଜୁରେ ବାନ୍ଧି ରଖିବାର ବ୍ୟାଖ୍ୟାନ ତାଙ୍କର ଅଦ୍ଭୁତ ଓ ଚମତ୍କାର ଥିଲା । ସାମାନ୍ୟ ଚକ୍ଷୁହୀନ ଜନ୍ମାନ୍ଧ କନ୍ଧ ଜନଜାତି ମଣିଷଟି ହୋଇ ମଧ୍ୟ ସମାଜ ଓ ବିଶ୍ୱକୁ ଏକତା ମହାମନ୍ତ୍ରରେ ଦୀକ୍ଷିତ କରିବା ତାଙ୍କ ଜୀବନର ପରମ ଲକ୍ଷ୍ୟ ଥିଲା । ଏହି ମହାର୍ଘ ମହାମନ୍ତ୍ର ସେସମୟରେ ଅଗଣିତ ଜନଗଣଙ୍କ ହୃଦୟରେ ନିରନ୍ତର ଗଭୀର ରେଖାପାତ କରୁଥିଲା । ସର୍ବସାଧାରଣରେ ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ଖୋଲାଖୋଲି ସମାଜକୁ ଦିଗ୍‌ଦର୍ଶନ ପ୍ରଦାନ କରି ଏହି ମହାନ୍ ସନ୍ଥ ଏବେବି ଓଡ଼ିଶାର ମାଟି, ପାଣି, ପବନରେ ଅମର ହୋଇ ରହିଛନ୍ତି । କାରଣ ଏଇ ନିଆରା ସନ୍ଥଙ୍କ ନିକଟରେ ଦୁର୍ଲଭ ମାନବିକ ମୂଲ୍ୟବୋଧତା ତଥା ସତ୍ୟକୁ ସାମନା କରିବାର ପ୍ରଚଣ୍ଡ ଶକ୍ତି ଥିଲା । ଫଳସ୍ୱରୂପ ଓଡ଼ିଶା ମାଟିରେ ସାମାଜିକ ପ୍ରାଣୀମାନଙ୍କୁ ବିରଳ ମାନବିକତା ଓ ସତ୍ୟ ପ୍ରତି ଅନୁରାଗୀ କରିବା ପାଇଁ ଧର୍ମ ରୂପରେ ଏକ

ଆନ୍ଦୋଳନ ମୁଣ୍ଡଟେକି ଥିଲା । ଯେଉଁ ଧର୍ମର ନାମ ହେଉଛି 'ମହିମା ଧର୍ମ' । ଏହି ଧର୍ମର ମହାନ୍ ଉଦ୍ଦେଶ୍ୟ ଥିଲା ସମାଜକୁ ଏକତା ସୂତ୍ରରେ ବାନ୍ଧି ରଖିବା ।

ସେ ଯାହାବି ହେଉ, ଏହି ଧର୍ମର ଆଦିପୀଠ ହେଉଛି ଢେଙ୍କାନାଳ ସ୍ଥିତ ଯୋରନ୍ଦା ମହିମାଗାଦି । ଯେଉଁଠି ଏବେବି ସାମ୍ୟବାଦର ମନ୍ତ୍ରିତ ଧ୍ୱନି ସାରା ବିଶ୍ୱର କୋଣ ଅନୁକୋଣରେ ସୁଦୂର ଓଡ଼ିଶାରୁ ପ୍ରତିଧ୍ୱନିତ ହେଉଛି । ତତ୍‌ସହିତ ସନ୍ଥକବି ଭୀମଭୋଇଙ୍କ ପବିତ୍ର ଦିବ୍ୟବାଣୀର ଝଲକ 'ବିଶ୍ୱ ଜାତିସଂଘ'ରେ ମଧ ଦେଖିବାକୁ ମିଳେ । କେବଳ ଏତିକିରେ ସୀମିତ ନଥିଲା ତାଙ୍କ ମହାନ୍ ଭକ୍ତିର ପରିଭାଷା । ଅନ୍ଧକବି ଭାବରେ ଜଗତ ଓ ମୃତ୍ୟୁକୁ ସ୍ୱଚକ୍ଷୁରେ ଦେଖିନଥିବା ଏଇ ସନ୍ଥଙ୍କର ଦିବ୍ୟବାଣୀ ଥିଲା– 'ଜଗତ ମିଥ୍ୟା, ମୃତ୍ୟୁହିଁ ପରମ ସତ୍ୟ ।' ସୁତରାଂ ତାଙ୍କ ବିଷୟରେ କେବଳ ଏତିକି କୁହାଯାଇପାରେ ଯେ, ଭୀମଭୋଇଙ୍କ ସାରସ୍ୱତ କୃତୀରେ ବ୍ୟବହୃତ ହୋଇଥିବା ପ୍ରତ୍ୟେକଟି ଶବ୍ଦାବଳୀରେ ବିଶ୍ୱବାସୀଙ୍କୁ ମାନବିକ ତଥା ଆଧ୍ୟାତ୍ମିକ ଦିଗ୍‌ଦର୍ଶନ ଦେବାର ସମସ୍ତ କଳା ସମାହିତ ହୋଇ ରହିଛି । ଯଦ୍ୱାରା ଜ୍ୱଳନ୍ତ ଉଦାହରଣ ଓଡ଼ିଶାର ପୁରପଲ୍ଲୀରେ ଗୁଞ୍ଜରିତ ହେଉଥିବା ପବିତ୍ର ତଥା ହୃଦୟଗ୍ରାହୀ ଭଜନ କୀର୍ତ୍ତନ ଦୃଶ୍ୟପଟ । 'ରୂପରେଖ ନାହିଁ ହେ ଶୂନ୍ୟଦେହୀ... ।'

ଯେହେତୁ ଭୀମଭୋଇ ଅଲେଖ ଧର୍ମର କବି ଚୂଡ଼ାମଣୀ ଥିଲେ ତଥା ମାନବବାଦର ଜଣେ ଜିଜ୍ଞାସୁ ପୁରୁଷ । ଯାହାଙ୍କର ବିଶ୍ୱବାସୀଙ୍କ ପ୍ରତି ଉପଦେଶ ଥିଲା, 'ନର୍କଗାମୀ ନ ହେବା ପାଇଁ ।' ତତ୍‌ସହିତ ମହିମାତତ୍ତ୍ୱ ଓ ଧର୍ମଦର୍ଶନର ପ୍ରସାର ପ୍ରଚାର ପାଇଁ ତାଙ୍କ ପ୍ରତ୍ୟେକଟି ସାହିତ୍ୟ ସର୍ଜନାରେ ଥିଲା ମହିମା ଧର୍ମଦର୍ଶନର ସରଳ, ସହଜ ଓ ସାବଲୀଳ 'ବୋଲି', ଯାହା ପ୍ରତିଫଳିତ ହେଉଥିଲା ତାଙ୍କ ସାରସ୍ୱତ ଜୀବନଦର୍ଶନରେ । ସୁତରାଂ ଏହାବି କୁହାଯାଇପାରେ ଯେ, 'ତାଙ୍କ ସରଳ, ସହଜ ଓ ସୁନ୍ଦର 'ବୋଲି'ରେ ବିଭୁଙ୍କ ପ୍ରତି ଅଭିମାନର ଲେଶମାତ୍ର ଚିହ୍ନ ନଥିଲା ।

ତାହାହେଲେ ଏଥିରୁ ସ୍ପଷ୍ଟ ଅନୁମେୟ ହୁଏ ଯେ ତାଙ୍କ କବିତ୍ୱ ଓ ପାଣ୍ଡିତ୍ୟ ଥିଲା ଅନନ୍ୟ ଓ ଚମତ୍କାର । ଯଦିଓ ଭୀମଭୋଇ ଜଣେ ପ୍ରବୀଣ ଆଧ୍ୟାତ୍ମିକବାଦୀର ଧର୍ମାତ୍ମା ପୁରୁଷ ଥିଲେ । ମାତ୍ର ଧର୍ମ ଆଧ୍ୟାତ୍ମିକତା ଅପେକ୍ଷା ସେ ମାନବବୋଧ ଉପରେ ଯଥେଷ୍ଟ ଗୁରୁତ୍ୱ ପ୍ରଦାନ କରୁଥିଲେ ।

'ସର୍ବେ ଭବନ୍ତୁ ସୁଖିନଃ, ସର୍ବେ ସନ୍ତୁ ନିରାମୟା'ରେ ଅଭିମନ୍ତ୍ରିତ ଥିବା ଭୀମଭୋଇଙ୍କର ଦିବ୍ୟ ବ୍ୟକ୍ତିତ୍ୱ ଶିକ୍ଷଣୀୟ ଥିଲା । ଯେଉଁଥିପାଇଁ ତାଙ୍କୁ 'ଊନବିଂଶ ଶତାବ୍ଦୀର ଭାରତୀୟ ଆଧ୍ୟାତ୍ମିକ ସାହିତ୍ୟର ନାୟକ' ବୋଲି ଅଭିହିତ କରାଯାଏ । ପ୍ରକୃତରେ କହିବାକୁ ଗଲେ, ଭୀମଭୋଇ ଜଣେ ସନ୍ଥ ଥିଲେ । ସନ୍ଥମାନେ ଯେପରି ଈଶ୍ୱର ସମର୍ପିତ, ଠିକ୍ ସେହିପରି ତାଙ୍କ ବ୍ୟକ୍ତିତ୍ୱରେ ପ୍ରସ୍ଫୁଟିତ ହେଉଥିଲା ଋଷିସୁଲଭ ଚିନ୍ତନ ଓ ଚେତନା । ଯେହେତୁ ସେ ଛୋଟବେଳୁ ଶିଶୁସୁଲଭ ଚପଳତାକୁ ହରାଇ ବସିଥିଲେ । ସୁତରାଂ ସୃଷ୍ଟିକର୍ତ୍ତାଙ୍କର ଷଡ଼ବିଧ ସୃଷ୍ଟି ମଧ୍ୟରେ ୮୪ ଲକ୍ଷ ଯୋନି ସମ୍ଭୂତ ଥିବାବେଳେ ସଂସ୍କାରବାଦୀ ସନ୍ଥ ଶ୍ରେଷ୍ଠ ମାନବ ଭୀମଭୋଇ ତନ୍ମଧ୍ୟରୁ ସର୍ବଶ୍ରେଷ୍ଠ ସୃଷ୍ଟି । ତେଣୁ ଶ୍ରେଷ୍ଠ ମାନବର ବର୍ଣ୍ଣନା କରି ବେଦାନ୍ତ କହିଛି, 'ଅମୃତସ୍ୟ ବୈପୁତ୍ରାଃ ।' ଅର୍ଥାତ ମାନବ ଅମୃତର ସନ୍ତାନ । ଯାହା ନିକଟରେ କିଛି ନୂଆ ନୁହେଁ ଓ ସବୁ ସମ୍ଭବ, ସେହିଁ ପ୍ରକୃତ ମାନବ । ଠିକ୍ ଯାହା ସନ୍ଥକବି ଭୀମଭୋଇଙ୍କ ନିମିତ୍ତ ପ୍ରଯୁଜ୍ୟ । ଯିଏ ଉତ୍କଳ ମାତାର ସବୁ ସନ୍ତାନ ମଧ୍ୟରୁ ଅନ୍ୟତମ ଓ ପରମ ପୂଜ୍ୟନୀୟ ସନ୍ଥ ଥିଲେ ।

ଶେଖ୍ ବଜାର, ନିୟୁ କଲୋନୀ, କଟକ–୮

❖ ❖ ❖

# ମୀନାକ୍ଷୀ ଓ ସୁନ୍ଦରେଶ୍ୱର ମନ୍ଦିର

**କୃଷ୍ଣପ୍ରିୟା ଦାସ**

ବିରଳ ଭାସ୍କର୍ଯ୍ୟ ଓ ତାମିଲ ସଂସ୍କୃତିର ପୀଠସ୍ଥଳ ତାମିଲନାଡୁର ମଦୁରାଇ ନଗର ଏକପ୍ରକାର ମୌନାବଲମ୍ବନ ହୋଇ ନିଜର ଗରିମା ହରାଇ ବସିଛି । କାରଣ ମଳୟ ଧ୍ୱଜ ଓ ରାଣୀ କାଞ୍ଚନମାଳା ସନ୍ତାନ କାମନାରେ ଚାଲିଯାଇଛନ୍ତି 'ଭାଇଗାଇ' ନଦୀର ଅପରପାର୍ଶ୍ୱ ଘୋର ଅରଣ୍ୟ ମଧ୍ୟକୁ ତପସ୍ୟା କରିବା ପାଇଁ । ରାଜାଶୂନ୍ୟ ରାଜଧାନୀ ମଉଳି ଯାଇଛି ଯେପରି ...... ।

ରାଜ୍ୟର ସମସ୍ତ ପ୍ରଜା ସଂଯମ ବ୍ରତ ଆଚରଣ କରି ଦେଶର ଉତ୍ତରାଧିକାରୀଟିଏ ନିମନ୍ତେ ଭଗବାନଙ୍କ ନିକଟରେ ବ୍ୟାକୁଳ ପ୍ରାର୍ଥନାରତ । 'କଦଲ ଅଲଗର ବିଷ୍ଣୁ'ଙ୍କ ପୂଜାର୍ଚ୍ଚନାରେ ଲାଗିରହିଛନ୍ତି ମହାମନ୍ତ୍ରୀ । ସବୁରୀ ଡ଼ାକରେ ଭଗବାନ ବିଷ୍ଣୁ, ସମସ୍ୟାର ସମାଧାନ ସ୍ୱରୂପ ଦେବର୍ଷି ନାରଦଙ୍କୁ ପ୍ରେରଣ କରିଥିଲେ ।

ମହର୍ଷି ନାରଦଙ୍କ ବୀଣା ବାଦନ ଓ ନାରାୟଣ ନାମ ରଟନ ଏତେ ସୁମଧୁର ଥିଲା ଯେ ତପନିଷ୍ଠ ରାଜ ଦମ୍ପତିଙ୍କ ଧ୍ୟାନ ଭଙ୍ଗ ହୋଇଗଲା । ସେମାନେ ଗୁପ୍ତଗୁହାରୁ ବାହାରି ଆସି ବ୍ରହ୍ମାପୁତ୍ର ନାରଦଙ୍କ ପଦ ବନ୍ଦନା କଲେ ଏବଂ ସମସ୍ତ କାରଣ ଜଣାଇବା ଆଗରୁ ନାରଦ ସହାସ୍ୟ ହୋଇ କହିଲେ ...... ଆଉ ଚିନ୍ତା କରିବାର ସମୟ ନାହିଁ । ବର୍ତ୍ତମାନ ରାଜ୍ୟକୁ ଯାଇ ସନ୍ତାନ ସମ୍ଭବ ମହାଯଜ୍ଞ ଆରମ୍ଭ କର । କଦଲ ଅଲଗର ବିଷ୍ଣୁଙ୍କ ପ୍ରସନ୍ନରେ ତୁମର ମନ କାମନା ପୂର୍ଣ୍ଣ ହେବ ।

ତାହାହିଁ ହେଲା । ରାଜ୍ୟରେ ପଦାର୍ପଣ କରିବା ମାତ୍ରେ, ମହା ମହା ତପସ୍ୱୀ, ମୁନି ଋଷିମାନଙ୍କ ଆଗମନ ଘଟି ଯଜ୍ଞର ଆୟୋଜନ କରାଗଲା । ଯଜ୍ଞ ପୁରୋଧାଙ୍କ କହିବା ଅନୁସାରେ ରାଜଦମ୍ପତି ଆହୁତି ପ୍ରଦାନ କଲେ । ନବଦିନ ବ୍ୟାପୀ ଘୃତାହୁତିର ଜାଜ୍ୱଲ୍ୟମାନ ଶିଖା ମଧ୍ୟରୁ ଅଲୌକିକ ପ୍ରଭା ବିସ୍ତାର କରି ବାହାରି ଆସିଲା ଶୋଭା ସୁନ୍ଦରୀ ସୁବର୍ଣ୍ଣବର୍ଣ୍ଣା କନ୍ୟାରତ୍ନ । ଆକାଶ ମାର୍ଗରୁ ଖସିପଡୁଥିଲା ଫୁଲ ଚନ୍ଦନର ବର୍ଷା ........ ।

ସମସ୍ତ ପ୍ରଚେତାମାନଙ୍କ ଦିବ୍ୟଦୃଷ୍ଟିରୁ ବାଦ୍ ଯାଇନଥିଲା– ମହାମାୟା ତାରା ଶକ୍ତିଙ୍କ ମର୍ତ୍ତ୍ୟାବତାର । କନ୍ୟାପ୍ରାପ୍ତ କରି ରାଜା ରାଣୀ ପରମ ଆନନ୍ଦ ଲାଭ କଲେ ମଧ୍ୟ, ଆଶ୍ଚର୍ଯ୍ୟ ମଣୁଥିଲେ ତିନୋଟି ସ୍ତନଥିବାରୁ । ଯେ କି ବିପରୀତ .....?

ହଠାତ୍ ଆପ୍ତବାଣୀ ପ୍ରସାରୀ ଆସିଲା ..... 'ନିଶ୍ଚିନ୍ତ ରୁହ ..... ଏ କନ୍ୟା ଯେଉଁଦିନ ତାଙ୍କର ଭାବି ସ୍ୱାମୀଙ୍କ ଦର୍ଶନ ଲାଭ କରିବେ, ସେହି ମୁହୂର୍ତ୍ତ ତୃତୀୟ ସ୍ତନଟି ଉଭେଇ ଯିବ । ସେ ହୋଇ ଉଠିବେ ନବ ଯୌବନ ସମ୍ପନ୍ନା ଅପରୂପା ଅନନ୍ୟା ...... ।'

ହର୍ଷ ଉଲ୍ଲାସରେ ଗଗନ ପବନ ପ୍ରକମ୍ପିତ ହେଉଥିବାବେଳେ, ପୃଥିବୀ ଶସ୍ୟ ଶ୍ୟାମଳା ପୁଷ୍ପ, ଫଳରେ ନମ୍ରତା ପ୍ରକାଶ କରି କହୁଥିଲା ....... ହେ ଦେବୀ ରାଜରାଜେଶ୍ୱରୀ! ଜଗତକୁ ମହିମା ମଣ୍ଡିତ କରି, ନାରୀ ଜାତିର ସମ୍ମାନ ବର୍ଦ୍ଧନ କର ମା' । ଧରାବକ୍ଷରେ ତୁମର ନାମ ସ୍ୱର୍ଣ୍ଣାକ୍ଷର ପାଲଟି ଯାଉ ....... ।

ଜାତ କର୍ମ ସଂସ୍କରାଦି ପରେ ... ନାମକରଣ କରାଗଲା ...... 'ତତାତକାଇ' । ( ଏହି ନାମ ତାମିଲ ଭାଷାରେ ମହାମାୟୀ ତାରାଙ୍କୁ ବୁଝାଏ)

ସକଳ ବୈଭବ ଦାୟିନୀ ଦେବ କନ୍ୟା ତତାତକାଇ ରାଜ ମହଲର ଐଶ୍ୱର୍ଯ୍ୟରେ ଦିନକୁ ଦିନ ଶଶିକଳା ସଦୃଶ ବଢ଼ି ଉଠିଲେ । ବାଲ୍ୟ, କୈଶୋର ପାର ହେଲାବେଳକୁ ସେ ହୋଇ ସାରିଥିଲେ ସମସ୍ତ ବିଦ୍ୟାରେ ପାରଙ୍ଗମ । ଶାମ, ଦାନ, ଦଣ୍ଡ, ଭେଦର ଅପୂର୍ବ କୁଶଳତାରେ ଗଠନ କରିଥିଲେ ନାରାୟଣୀ ବାହିନୀ । ସମବୟସୀମାନେ, ରାଜକନ୍ୟାଙ୍କଠାରୁ ସମସ୍ତ ବିଦ୍ୟାରେ ନିପୁଣ ହୋଇ ଉଡ଼ାଇଥିଲେ ଦେଶର ଧ୍ୱଜା । ଏହି ବୀରାଙ୍ଗନାମାନଙ୍କ କୃତୀ ପ୍ରସାରୀ ଯାଇଥିଲା ଭାରତବର୍ଷର ଚତୁର୍ଦ୍ଦିଗକୁ ।

ନାରାୟଣୀ ସେନାଙ୍କୁ ନେଇ, ଆରମ୍ଭ ହେଲା ଦିଗ୍‌ବିଜୟ । ରାଜକନ୍ୟାର ବୀରତ୍ୱରେ ଗର୍ବିତ ହୋଇ ପିତା ମଳୟ ଧ୍ୱଜ 'ଅଜୟ ଅଶ୍ୱ' ପ୍ରଦାନ କରିଥିଲେ । ମାତା, ପିତାଙ୍କ ସଦିଚ୍ଛା ଓ ଆଶୀର୍ବାଦକୁ ପାଥେୟ କରି, ଘୋଡ଼ା ଝପଟେଇ ଦେଲେ 'ତତାତକାଇ' । ପଛରେ ଅଜସ୍ର ନାରାୟଣୀ ସେନା । ହାତୀ, ଘୋଡ଼ାର କଳନା ନଥିଲା ।

ରାଜ୍ୟ ପରେ ରାଜ୍ୟ ମାଡ଼ି ଚାଲିଥିଲେ ..... ସବୁଠି ମିଳୁଥିଲା ସମ୍ବର୍ଦ୍ଧନା, ସମ୍ମାନ, ଆଉ ଧନରତ୍ନର ବହୁଳ ଭେଟି । ତତାତକାଇ କୌଣସି ଦ୍ରବ୍ୟ ସ୍ୱର୍ଶ ନ କରି, ସବୁଠାରେ ଗୋଟିଏ ମାତ୍ର ଉପଦେଶ ଦେଉଥିଲେ .... 'ଧର୍ମର ଜୟ ହେଉ, ଅଧର୍ମର ବିନାଶ ହେଉ ।' ସବୁଠି ତାଙ୍କର ବିଦ୍‌ମତାର ପ୍ରଶଂସା ସହିତ, ଦେବୀ ତତାତକାଇଙ୍କ ଜୟଧ୍ୱନି । ମଦୁରାଇ ନରେଶ କୁଳଶେଖର ପାଣ୍ଡେଙ୍କ ପୌତ୍ରୀ, ମଳୟଧ୍ୱଜ ପାଣ୍ଡେଙ୍କ ଉତ୍ତରାଧିକାରିଣୀ ପୁତ୍ରୀ । ସେତିକି ନୁହେଁ ସମଗ୍ର ବିଶ୍ୱ ନମ୍ରିତା ପ୍ରସିଦ୍ଧା ଅଖଣ୍ଡ ଧ୍ୱଜା ଧାରିଣୀ ତତାତକାଇ! ସେ କନ୍ୟା ହେଉ, ଅଥବା ପୁତ୍ର, ଚରିତ୍ରହିଁ ସଜାଇ ରଖେ ନାମକୁ । ଇତିହାସ ଲେଖାହୁଏ ସ୍ୱର୍ଣ୍ଣାକ୍ଷରରେ .... । ଅଯୋନୀ ସମ୍ଭୂତା ଯାଜ୍ଞସେନୀଙ୍କର ମାନବ ଲୀଳା ...... ।

ପୂର୍ବଜନ୍ମତ ଦେବୀ ଲୀଳାରେ ପର୍ବତ ରାଜ ହେମବନ୍ତ, ରାଣୀ ମେନାଙ୍କ କନ୍ୟା ରୂପରେ ପାର୍ବତୀ । ଦେବକୁଟରେ ତାଙ୍କର ସୁବର୍ଣ୍ଣ ବର୍ଣ୍ଣକୁ କାଳରାତ୍ରୀଙ୍କ କବଳରେ କବଳିତ ହୋଇ, ପାଲଟି ଯାଇଥିଲା କୃଷ୍ଣବର୍ଣ୍ଣ । ତଥାପି ତାଙ୍କର ଅନିନ୍ଦ୍ୟ ଗଠନ ରୂପମାଧୁରୀରେ ଦେବ ଦେବ ମହାଦେବ ବିମୋହିତ ହୋଇ, ପର୍ବତ କନ୍ୟା ପାର୍ବତୀଙ୍କୁ ବିବାହ କରି କୈଳାସକୁ ଘେନି ଯାଇଥିଲେ । ପାର୍ବତ୍ୟ ଗୁମ୍ଫାର ଅନ୍ଧକାରାବୃତ୍ତ କେଳି କୌତୁକ ଛଳରେ ଶିବ କହି ପକାଇଲେ .... ହେ ରକ୍ତାମ୍ବରା ଧରା କାଳୀ! ତୁମେ ବର୍ତ୍ତମାନ ଚନ୍ଦନ ବୃକ୍ଷରେ କଳାନାଗୁଣୀ ଛନ୍ଦି ହେଲା ପରି, ମୋର ଗୌର ଶରୀରରେ ଦେଖାଯାଉଛ । (ଭୁଜଙ୍ଗୀ ବାସିତା ଶ୍ରଦ୍ଧାସଂଶ୍ଲିଷ୍ଟା ଚନ୍ଦନ ତରୌ) (*ମତ୍ସ୍ୟ ପୁରାଣ*) ।

ରତିକ୍ରୀଡ଼ାରେ ପ୍ରଥମ ରାତ୍ରୀ ମୈଥୁନ ସୁଖକୁ ଆସ୍ୱାଦନ କରୁଥିବା ସମୟରେ ପତିଦେବଙ୍କ ଏପରି ସମ୍ବୋଧନ ଶବ୍ଦଟି ତାଙ୍କୁ ଅସହ୍ୟ ମନେ ହେବାରୁ, ସେ ପ୍ରବଳ ମାନ କୁପିତା ହୋଇ ସଙ୍ଗ ଭଙ୍ଗ କରି କହିଲେ ... ହେ ବିଷକଣ୍ଠ ମହାକାଳ! ତୁମେ ମୋତେ କାଳୀ ନ କହି ଆଉ କ'ଣ କହ'? ଏପରି ଅସୂୟା ଶବ୍ଦ ତ ସହ୍ୟ କରିବା ମୋ ପକ୍ଷେ ସମ୍ଭବ ନୁହେଁ । ଶରୀର ବରଂ ତ୍ୟାଗ କରିଦେବା ସବୁଠୁ ଭଲ ।

ଶିବଙ୍କ ଅନୁନୟ ବିନୟକୁ ପରିତ୍ୟାଗ କରି କୁପିତା ଅଗ୍ନିସମା ମହାକାଳୀ ପତିଙ୍କୁ ଉପେକ୍ଷା କରି ତତ୍‌କ୍ଷଣାତ୍ ସେଠାରୁ ଅନ୍ତର୍ଦ୍ଧାନ ହୋଇ ଏକାମ୍ର କାନନରେ ଗୌରତ୍ୱ ପ୍ରାପ୍ତି ପାଇଁ ତପସ୍ୟା ଆରମ୍ଭ କରିବା ପୂର୍ବରୁ ଶୂନ୍ୟବାଣୀ ହେଲା.... 'ହେ ଦେବୀ! ତପସ୍ୟାରେ ଅଯଥା ସମୟ ନଷ୍ଟ ନ କରି, ମଦୁରାଇ ରାଜ୍ୟକୁ ବିଜେ କର । ରାଜା ମଳୟଧ୍ୱଜଙ୍କ ପୂର୍ଣ୍ଣାହୁତି ମହାଯଜ୍ଞରୁ ସ୍ୱୟଂ ଉତ୍ପନ୍ନ ହୋଇ ସୁବର୍ଣ୍ଣାବର୍ଣ୍ଣା କନ୍ୟା ରୂପରେ ବିରାଜମାନ ହୁଅ ।' ତେବେ ଅବିଚଳିତା ମହାକାଳୀଙ୍କ ମନ ମାନେନା । ମହାକୌଷୀ ଜଳପ୍ରପାତରେ ତପସ୍ୟା କରିବା ଆଗରୁ ଶିବଙ୍କୁ ଦର୍ଶନ କରନ୍ତି । ଶିବ ଆତ୍ମତତ୍ତ୍ୱ ବୁଝାଇବା ପରେ ମୋହର ବିନାଶ ଘଟେ ଏବଂ ମଳୟଧ୍ୱଜଙ୍କ ମହାଯଜ୍ଞରୁ ତାଙ୍କୁ ଶୁଣାଯାଏ

ଆବାହନ । ତତ୍‌କ୍ଷଣାତ୍ ସେଠାରେ ତାଙ୍କର ଶିଶୁକନ୍ୟାର ସ୍ୱରୂପ ପ୍ରକାଶ ଲାଭ କରେ । 'ପତିନିଷ୍ଠ ଭାରତୀୟ ନାରୀ, ପାର୍ବତୀ ହିଁ ଏହାର ଉଦାହରଣ ।'

**ପୂର୍ବ ପର ସଂପର୍କ**

ମାନବୀ ଲୀଳାରେ ଦିଗ୍‌ବିଜୟ କରୁ କରୁ ପହଞ୍ଚିଯାଇଥିଲେ, ଭୂଧରାଧର ଭୂଷିତ ଦେବ ଦେବ ମହାଦେବଙ୍କ ନିବାସ ସ୍ଥଳ କୈଳାସରେ । ତଡାତକାଇଙ୍କ ଉପସ୍ଥିତିରେ କୈଳାସର ଶୋଭା ଅନନ୍ୟ ରୂପଧାରଣ କଲା । ପାର୍ବତୀଙ୍କ ଅଙ୍ଗ ସୁଗନ୍ଧରେ ମହାଦେବଙ୍କ ଧ୍ୟାନ ତୁଟିଯିବାରୁ, କନକ ଗୁମ୍ଫାରୁ ନିର୍ଗତ ହୋଇ ଯାହା ଦେଖିଲେ ଚକ୍ଷୁ ପଲକ ପାତ ହେଲା ନାହିଁ । ତଡାତକାଇ ଶିବଙ୍କୁ ଚାହିଁବା ମାତ୍ରେ, ତାଙ୍କର ତୃତୀୟ ସ୍ତନଟି ଉଭେଇଗଲା । ତତ୍‌କ୍ଷଣାତ୍ ଅନିନ୍ଦ୍ୟ ସୁନ୍ଦରୀ ତପ୍ତକାଞ୍ଚନ ଗୌରାଙ୍ଗୀ, ନବଯୌବନସମ୍ପନ୍ନା ହୋଇ ଶିବଙ୍କୁ ଅଭିବାଦନ ଜଣାଇଲେ ।

ଅପଲକ ତ୍ରିଲୋଚନ ପଲକପାତ କରି କହିଲେ .... ହେ ଦେବୀ ମୀନାକ୍ଷୀ! ତୁମର ଯାତ୍ରା ସଫଳ ହୋଇଛି । ଆଜଠାରୁ ତୁମର ନାମ ରହିବ ମୀନାକ୍ଷୀ! ମୀନ ସଦୃଶ୍ୟ ଦିବ୍ୟ ସୁନ୍ଦର ଚାହାଣିରେ ମୋତେ ବଶ କରିଥିବାରୁ ତୁମକୁ ଧନ୍ୟବାଦ ଅର୍ପଣ କରୁଛି । ଏଥର ସ୍ୱରାଜ୍ୟକୁ ପ୍ରତ୍ୟାବର୍ତ୍ତନ କରି, ଶୁଭପରିଣୟ ନିମନ୍ତେ ଅପେକ୍ଷା କର । ମୁଁ ଠିକ୍ ଆଠ ଦିନ ଭିତରେ ବରଯାତ୍ରୀ ସହିତ ମଦୁରାଇରେ ପହଞ୍ଚି ତୁମର ପାଣିଗ୍ରହଣ କରିବି ।

ଫେରନ୍ତା ପଥକୁ ଚାହିଁ ରହିଥିବା ପାଣ୍ଡ୍ୟେଦମ୍ପତି ସବୁ କଥା ଶୁଣିବା ପରେ ଆନନ୍ଦର ସୀମା ନଥିଲା । ବିବାହର ସମସ୍ତ ଆୟୋଜନ କରୁ କରୁ ଅଷ୍ଟମ ଦିବସରେ ତେତିଶ କୋଟି ଦେବାଦେବୀଙ୍କ ସହିତ ଶିବଗଣଙ୍କୁ ନେଇ ସୁନ୍ଦେରଶ୍ୱର ନାମ୍ନୀ ଶିବ ମଦୁରାଇରେ ପହଞ୍ଚି ମୀନାକ୍ଷୀ ଦେବୀଙ୍କୁ ବିବାହ କରି, କୁବେରଙ୍କ ଦ୍ୱାରା ପ୍ରସ୍ତୁତ ଭବ୍ୟ ମନ୍ଦିରରେ ନିବାସ କଲେ ।

ସେହିଦିନୁ ସେହି ମନ୍ଦିରର ନାମ ରହିଛି 'ମୀନାକ୍ଷୀ ସୁନ୍ଦରେଶ୍ୱର ମନ୍ଦିର' । ଶିବ ପାର୍ବତୀଙ୍କ ବିହାର ସ୍ଥଳ ଓ ମହାକାଳୀଙ୍କ ପୂର୍ବପର ସଂପର୍କର ଅଭୁଲା ଗୌରବ । ଭାରତର ଏହା ଏକ ହିନ୍ଦୁ ମନ୍ଦିର, ଯାହା ତାମିଲନାଡୁରେ ଅବସ୍ଥିତ ମୀନାକ୍ଷୀ ମନ୍ଦିରର ଇତିହାସ ।

ମୈଥିଳୀ ନିବାସ, ପ୍ଲଟ୍ ନଂ.–୫୮
ଗଜପତି ନଗର, ପୁରୀ – ୨

❖ ❖ ❖

# ପୃଥିବୀରେ ବିରଳ ଓଡ଼ିଶାର ପଖାଳ

**କର୍ଣ୍ଣେଲ ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତି**

**ପଖାଳର ଇତିବୃତ୍ତି ଓ ସଂସ୍କୃତି**

ପଖାଳ ଓଡ଼ିଶାର ଏକ ପାରମ୍ପରିକ ଖାଦ୍ୟ । ପଖାଳ ଶବ୍ଦଟି ସଂସ୍କୃତ ଶବ୍ଦ 'ପ୍ରକ୍ଷାଳନ'ରୁ ଉତ୍ପତ୍ତି, ଯାହାର ଅର୍ଥ ହେଉଛି ଧୋଇବା ବା ଧୌତକରଣ, ମାର୍ଜନ ବା ପରିଷ୍କୃତ । ଏହା ଏକ ବିଶେଷ୍ୟ ଶବ୍ଦ । ଏହାର ବିଶେଷଣ ହେଉଛି ପ୍ରକ୍ଷାଳିତ, ଯାହାର ଅର୍ଥ ଧୌତ ବା ମାର୍ଜିତ । ପ୍ରକ୍ଷାଳନ ଶବ୍ଦଟି ବାସ୍ତବରେ ହେଉଛି 'ପ୍ର–କ୍ଷାଳି–ଅନ' । ସଂକ୍ଷେପରେ କହିବାକୁ ଗଲେ ପଖାଳ ହେଉଛି ଭାତ ରୋଷେଇ ହୋଇ ପ୍ରସ୍ତୁତ ହୋଇଗଲା ପରେ ଯାହା ବଳକା ହୋଇଯାଏ, ତାହା ଭିତରେ ପାଣି ପୂରାଇ ପରେ ଖାଇବାକୁ ରଖି ଦିଆଯାଉଥିବା ଭାତ । ଏହାର କାରଣ ଗରମ ଭାତ ସେମିତି ରଖିଦେଲେ ବୀଜାଣୁ ଦ୍ୱାରା ସଂକ୍ରମଣରେ ଗନ୍ଧ ହୋଇଯାଏ ଓ ଖରାପ ହୋଇଯାଏ ବୋଲି ଖାଦ୍ୟୋପଯୋଗୀ ହୋଇପାରେ ନାହିଁ । ମାତ୍ର ସେ ବଳକା ଭାତକୁ ଖାଦ୍ୟ ଭାବରେ ଖାଇବା ନିମିତ୍ତ ଉପଯୋଗୀ କରିବା ଲାଗି ସେ ଭାତରେ ପାଣି ଦେଇ ରଖି ଦିଆଯାଏ । ତା' ଦ୍ୱାରା ଭାତ ଖରାପ ହୋଇନଥାଏ, ବରଂ ସେ ଭାତର ଖାଦ୍ୟଗୁଣ ବଢ଼ି ଯାଇଥାଏ । ଗାଁ ଗହଳି ଓ ପୁରପଲ୍ଲୀରେ ପଖାଳ ଏକ ଅତି ପରିଚିତ, ଆଦୃତ ତଥା ଭଲରେ ପ୍ରସ୍ତୁତ ଖାଦ୍ୟ । ତା'ର ବାସନା, ସ୍ୱାଦ ଓ ସେ ଭାତରେ ଆବଶ୍ୟକ ହେଉ ନଥିବା କିଛି ପ୍ରକାରର ତରକାରି ହିଁ ବିଶେଷତ୍ୱ । ସେଥିପାଇଁ ପଖାଳ କଂସା, ଶାଗ, ବଡ଼ିଚୁରା, ଆଳୁଚକଟା ଆଦି ସରଳ ପୁଷ୍ଟିକର ଖାଦ୍ୟଗୁଡ଼ିକ ପଖାଳ ବେଳା ସହ ଓତପ୍ରୋତ ଭାବରେ ଜଡ଼ିତ, ସଂପୃକ୍ତ, ସଂଯୁକ୍ତ ଓ ସଂଶ୍ଳିଷ୍ଟ । ପଖାଳର ଆଉ ଏକ ବିଶେଷ ଆକର୍ଷଣ ହେଉଛି କଂସା ବେଲାରେ ଖାଇବା ।



ଅର୍ଥନୈତିକ ଦୃଷ୍ଟିକୋଣରୁ ଆମ ରାଜ୍ୟରେ ଲୋକମାନେ ଅତି ସୁନ୍ଦର ଭାବରେ ପଖାଳକୁ ଆପଣାଇ ନେଇଥିଲେ । ଏତେ ପ୍ରକାର ବ୍ୟଞ୍ଜନ ନ କରି ଅତି ସାଧାରଣ ଭାବରେ ଭାତ ତିଆରି ସମୟରେ ତା' ଭିତରେ ଆଳୁ ଓ ସାରୁ ଇତ୍ୟାଦି ସିଝାଇବାରେ ଜାଳ, ସମୟ ଓ ଖର୍ଚ୍ଚ ଇତ୍ୟାଦିକୁ କମାଇବା ହେଉଛି ପଖାଳ ଭାତ ଖାଇବାର ସ୍ୱାତନ୍ତ୍ର୍ୟ । ପୁରାତନ ସମୟରେ ସ୍ୱଳ୍ପ ଅର୍ଜନ ସହ ସାଧାରଣ ଆଳୁଚକଟା, ଶାଗଭଜା ବା ଚୁଲି ପାଉଁଶରେ ଭେଣ୍ଡି, ଜହ୍ନି ଓ ଆଳୁପୋଡ଼ା ଚକଟାରେ ପିଆଜ, ସୋରିଷ ତେଲ, କଞ୍ଚା ରସୁଣ ଏବଂ କଞ୍ଚା ଲଙ୍କା ମଛି ପଖାଳ ଖାଇବା ଥିଲା ଅନନ୍ୟ ସଂସ୍କୃତି ଓ ଅଭ୍ୟାସ । ଆଉ ଥରେ ଭାତ

ତିଆରି କରି ତାକୁ ପଖାଳି ସମଗ୍ର ପରିବାର ଖାଉଥିଲେ ଦିନକୁ ପ୍ରାୟ ତିନିରୁ ଚାରି ଥର । ପ୍ରଥମ ଦିନ ଖାଦ୍ୟର ଭାତ ରହିଯାଉଥିଲେ ପୁଣି ତାକୁ ଖାଉଥିଲେ ତାକୁ ତା' ପରଦିନ ସକାଳୁ । ମନେ ପଡ଼ିଯାଏ ଯେ ଗାଁ ଗହଳିର ଚାଷୀ ପରିବାର ଚାଷୀ ସକାଳୁ ପଖାଳ ଖାଇଦେଇ ଯାଆନ୍ତି କ୍ଷେତକୁ । ଆଉ ସ୍ତ୍ରୀ ଲୋକମାନେ ତାକୁ ଖାଇ ଚାଲିଯାଆନ୍ତି ଚାଷଜମିକୁ ବା ଅନ୍ୟାନ୍ୟ କାର୍ଯ୍ୟ କରିବାକୁ । ଏବେ ବି ମୂଲିଆ ଓ ମୂଲିଆଣୀ କାର୍ଯ୍ୟକ୍ଷେତ୍ରକୁ ଗଲେ ସାଙ୍ଗରେ ଧରିଯାଆନ୍ତି ପଖାଳ ଭାତ । ପଖାଳ ଭାତର ଅନ୍ୟ ଏକ ଭଲ କଥା ହେଉଛି ଯେ ତରକାରି କିଛି ନ ଥିଲେ ମଧ୍ୟ କଞ୍ଚା ପିଆଜ ବା କଞ୍ଚା ରସୁଣ ବା ଆଚାର ଅଥବା ଶୁଖୁଆ ମଧ୍ୟ ଲଗେଇ ଖାଇହେବ । ଆମ ରାଜ୍ୟର ଅର୍ଥନୈତିକ ବା ରୋଜଗାର ପରିସ୍ଥିତିକୁ ଆଧାର କରି ଲୋକମାନେ ଏକ ସୁନ୍ଦର, ପୁଷ୍ଟିକର, ସ୍ୱାସ୍ଥ୍ୟପ୍ରଦ ତଥା ହିତକର ଖାଦ୍ୟକୁ ଅନେକ ଦିନ ଆଗରୁ ଆପଣେଇବା କଥା ବଡ଼ ଆଶ୍ଚର୍ଯ୍ୟ ଲାଗେ । ଆଉ ସହରାଞ୍ଚଳ ବ୍ୟକ୍ତି ସେ ଖାଦ୍ୟକୁ ନାକ ଟେକୁଥିଲେ ମଧ୍ୟ ଆଜି ସେ ପ୍ରକାର ଖାଦ୍ୟ ହୋଟେଲ, ରେଷ୍ଟୁରାଣ୍ଟ ଓ ରାସ୍ତାପାର୍ଶ୍ୱ ଦୋକାନଗୁଡ଼ିକରେ ବିଭିନ୍ନ ଭାବରେ ପ୍ରସ୍ତୁତ ଏବଂ ଲୋକମାନେ ଆଗ୍ରହାନ୍ୱିତ ଖାଇବା ପାଇଁ । ଏପରିକି ତାରକା ହୋଟେଲଗୁଡ଼ିକରେ ଖରାଦିନେ ପଖାଳର ଚାହିଦା କହିଲେ ନ ସରେ । ମୋଟାମୋଟି ପଖାଳର ମୂଲ୍ୟ ନିମ୍ନ କାରଣରୁ ଅମୂଲ ।

୧– ଥରେ ପ୍ରସ୍ତୁତିରେ ଏକାଧିକ ଥର ଖାଇବା
୨– କମ୍ ଖର୍ଚ୍ଚରେ ବହୁତ ପୁଷ୍ଟି
୩– ତରକାରିର ଅନାବଶ୍ୟକତା
୪– ପରିଶ୍ରମ କମ୍
୫– ସମୟ ବଞ୍ଚିବା

(ପଖାଳ ଭାତ ପ୍ରସ୍ତୁତି ଓ ଖାଇବାର ଉପକାର)

(୧) ପରିବାରର କମ୍ ଖର୍ଚ୍ଚରେ ବହୁତ ପୁଷ୍ଟି ।
(୨) ତରକାରି ପ୍ରସ୍ତୁତିର ଅନାବଶ୍ୟକତା ।
(୩) ଶ୍ରମ ବା ପରିଶ୍ରମ କମ୍ ।
(୪) ସମୟ ବଞ୍ଚାଇବା ।
(୫) ଥରେ ପ୍ରସ୍ତୁତିରେ ଏକାଧିକ ଥର ଖାଇବା ।

ପଖାଳର ଆଉ ଏକ ଘଟଣା ହେଉଛି ପୁରୀ ଶ୍ରୀକ୍ଷେତ୍ରସ୍ଥିତ ଶ୍ରୀଜଗନ୍ନାଥ ମନ୍ଦିରରେ ଜଗନ୍ନାଥଙ୍କ ପଖାଳଖିଆ । ଶ୍ରୀମନ୍ଦିରରେ ମଧ୍ୟ ଜଗନ୍ନାଥଙ୍କ ପାଖରେ ପଖାଳ ପ୍ରସ୍ତୁତି ଓ ପରିବେଷଣ ଏକ ସ୍ୱତନ୍ତ୍ର ଆକର୍ଷଣ । ଏହାଛଡ଼ା ପଖାଳ ଭାତର ତୋରାଣି ମଧ୍ୟ ଶ୍ରୀମନ୍ଦିରେ ମିଳିଥାଏ ବା ବିକ୍ରି କରାଯାଇଥାଏ, ଯାହାର ନାଁ ଟଙ୍କତୋରାଣି । ଏହି ଟଙ୍କ ତୋରାଣି ହେଉଛି ଅରୁଆ ଅବଢ଼ା ଭାତରେ ପାଣି ମିଶାଯାଇ ସେଥିରେ ଅନ୍ୟାନ୍ୟ ପଦାର୍ଥ ଅର୍ଥାତ ଅଦା, କଞ୍ଚାଲଙ୍କା, ଲେମ୍ବୁ ଆଉ କେତେକ ସୁବାସିତ ପତ୍ରମିଶା ତୋରାଣି । ଅନୁମେୟ ଯେ ପ୍ରାୟ ଦଶମ ଶତାବ୍ଦୀରୁ ମହାପ୍ରଭୁ ଶ୍ରୀଜୀଉଙ୍କ ପଖାଳ ବେଶ୍ ପ୍ରାସଙ୍ଗିକ, ଚର୍ଚ୍ଚିତ,ଆଲୋଚିତ ଏବଂ ପ୍ରକାଶିତ । କଥା କଥାରେ ଆଜିର ଲୋକମାନେ ଖାଦ୍ୟ କଥା ପଡ଼ିଲେ କହିଥାଆନ୍ତି, ''ସେ କାଳର ପଖାଳ ଏ କାଳରେ ନାହିଁ ।'' ତେଣୁ ଏ ଉକ୍ତିରୁ ସ୍ପଷ୍ଟ ଜଣାପଡ଼େ ପୁରୁଣା ସମୟର ପଖାଳର ମହତ୍ୱ ଓ ଗୁରୁତ୍ୱ । ପୁରୁଣା ପାଠର ଆଲୋଚନା ପରି ବର୍ତ୍ତମାନ ସହରରେ ପଖାଳର ପ୍ରଚାର ଓ ପ୍ରସାରହିଁ ଓଡ଼ିଆ ସଂସ୍କୃତି ଓ ପରମ୍ପରାକୁ ଉଜ୍ଜୀବିତ କରିବା ପରି ମନେହୁଏ । ଏ ପରମ୍ପରା ଅନେକ ଦିନର ଯାହା ଯୁକ୍ତିଯୁକ୍ତ, ଯୁକ୍ତିସଙ୍ଗତ ଓ ବୈଜ୍ଞାନିକଭିତ୍ତିକ ।

**ପଖାଳର ପ୍ରକାର**

ଭାତ ପ୍ରସ୍ତୁତି ପରେ ସେଥିରେ ପାଣି ମିଶାଇ ଖାଇଲେ ତାହାକୁ 'ସଜ ପଖାଳ' କୁହାଯାଏ । ସଜ ପଖାଳକୁ ରଖି ତା' ପରଦିନ ବା ଦିନେ ଦୁଇଦିନ ବା କିଛି ପରେ ଖାଇଲେ ସେ ପଖାଳକୁ 'ବାସି ପଖାଳ' କୁହାଯାଏ । ଯାହା ସାମାନ୍ୟ ଖଟା ଲାଗେ । ଆଉ ପଖାଳ ଭାତରେ ବିଭିନ୍ନ ସୁବାସିତ ଜୈବ ପଦାର୍ଥ ମିଶାଇ ଖାଇଲେ ତାହାର ନାଁ ସେହି ଅନୁସାରେ ହୋଇଥାଏ ।

ଉଦାହରଣ ସ୍ୱରୂପ– ଜିରା ମିଶଇଲେ 'ଜିରା ପଖାଳ', ଲେମ୍ବୁ ମିଶାଇଲେ 'ଲେମ୍ବୁ ପଖାଳ', କମଳା ମିଶାଇଲେ 'କମଳା ପଖାଳ', ମଲ୍ଲୀ ଫୁଲ ପକେଇ ଖାଇଲେ 'ମଲ୍ଲୀ ପଖାଳ', ଅଦା ମିଶାଇଲେ 'ଅଦା ପଖାଳ', ଘିଅ ମିଶାଇଲେ 'ଘିଅ ପଖାଳ', ଜିରାଲଙ୍କା ଗୁଣ୍ଡ ମିଶାଇ ଖାଇଲେ 'ଜିରାଲଙ୍କା ପଖାଳ', ଲେମ୍ବୁପତ୍ର ବା କମଳା ପତ୍ର ଚକଟି ଖାଇଲେ 'ଲେମ୍ବୁପତ୍ର' ବା 'କମଳା ପତ୍ର ପଖାଳ', ଦହି ପକାଇ ଖାଇଲେ 'ଦହି ପଖାଳ', ଫୁଟଣ ପକାଇ ଛୁଙ୍କ କଲେ 'ଛୁଙ୍କ ପଖାଳ', ଆମ୍ବକଷି ଅଦା ଚକଟିଲେ 'ଆମ୍ବକଷି ଅଦା ପଖାଳ' ଓ କଷି କାକୁଡ଼ି ପକାଇ ଖାଇଲେ ''କଷି କାକୁଡ଼ି ପଖାଳ' ଇତ୍ୟାଦି କୁହାଯାଏ ।

| | |
|---|---|
| ୧– ଜିରା ପଖାଳ | ୨– ଲେମ୍ବୁ ପଖାଳ |
| ୩– କମଳା ପଖାଳ | ୪– ମଲ୍ଲୀ ପଖାଳ |
| ୫– ଅଦା ପଖାଳ | ୬– ଘିଅ ପଖାଳ |
| ୭– ଜିରାଲଙ୍କା ପଖାଳ | ୮– କମଳା ପଖାଳ |
| ୯– ଦହି ପଖାଳ | ୧୦–ଛୁଙ୍କ ପଖାଳ |
| ୧୧–ଆମ୍ବକଷି ଅଦା ପଖାଳ | |
| ୧୨–କଷିକାକୁଡ଼ି ବା କଷି ଆମ୍ବ ପଖାଳ | |

***(ଆମ ରାଜ୍ୟ ଓଡ଼ିଶାରେ ପ୍ରସ୍ତୁତ ବିଭିନ୍ନ ପ୍ରକାର ପଖାଳ)***

ବର୍ତ୍ତମାନ ହୋଟେଲଗୁଡ଼ିକରେ ଆଉ କେତେକ ପଦାର୍ଥ ମିଶାଇ ଆଧୁନିକ ନାଁରେ ପ୍ରସ୍ତୁତ ଓ ପରିବେଷଣ ଦେଖାଯାଉଛି । କିନ୍ତୁ, ମୂଳ ପଖାଳର ଗୁଣ ସେମିତି ରଖାଯାଇ ପଖାଳହିଁ ପ୍ରସ୍ତୁତ କରାଯାଏ ।

**ପଖାଳର ପ୍ରସ୍ତୁତି**

ପଖାଳ ଆଖିକୁ ଦେଖା ନ ଗଲେ ବି ଏହା ଏକ ବୈଜ୍ଞାନିକ ଉପାୟରେ ପ୍ରସ୍ତୁତ ପ୍ରାକୃତିକ ଖାଦ୍ୟ । ଭାତ ପ୍ରସ୍ତୁତ ହୋଇଯିବା ପରେ କିଛି ଘଣ୍ଟା ଅର୍ଥାତ୍ ଛ'ଅରୁ ଦଶ ଘଣ୍ଟା ପାଣି ମିଶାଇ ରଖାଯାଏ । ଭାତ ଥଣ୍ଡା ହୋଇଯିବା ପରେ ପାଣି ମିଶାଯିବା ଦରକାର । ଭାତ ପ୍ରସ୍ତୁତ କରିଥିବା ଦରକାର ମାଟି ହାଣ୍ଡିରେ । ତାହାହେଲେ ବୈଜ୍ଞାନିକ ପ୍ରକ୍ରିୟାକରଣ ଠିକ୍ ରହିଥାଏ । ଭାତ ମଧ୍ୟରେ ପାଣି ପକାଇ ଘୋଡ଼ାଇ ରଖିଦେବା ପରେ ଏକ ଜୈବ ପ୍ରକ୍ରିୟା ସୃଷ୍ଟି ହୋଇଥାଏ ଆପେ ଆପେ । ଏ ପ୍ରକ୍ରିୟାର ନାଁ ହେଉଛି 'କିଣ୍ୱନ ପ୍ରକ୍ରିୟା' । ସାଧାରଣ ଭାଷାରେ ଏହାକୁ କୁହାଯାଏ 'ଖଟା ହେବା ଘଟଣା' । କିଛି ଘଣ୍ଟା ଭାତ ପାଣିରେ ରହିଯିବା ପରେ ବାୟୁମଣ୍ଡଳ ଆମ ଚାରିପଟେ ବାୟୁରେ ଥିବା ବୀଜାଣୁ ବା ବ୍ୟାକ୍ଟେରିଆ ଏହି ଭାତ ବା ଭାତର ପାଣିକୁ ଖଟା କରିବାରେ ଲାଗି ପଡ଼ନ୍ତି । ଯେତେ ଅଧିକ ସମୟ ରହିବ ସେତେ ଖଟା ଅଧିକ ଲାଗିବ । ତେବେ ବେଶି ଦିନ ବା ଦୁଇ ଦିନରୁ ଅଧିକ ରଖି ବାସି ଭାତ ଖାଇବା ଠିକ୍ ନୁହେଁ । ଏହା ଏକ ରାସାୟନିକ ପ୍ରକ୍ରିୟା । ଆଉ ଏ ଜୀବାଣୁଗୁଡ଼ିକ ଆମର ବେଶ୍ ଉପକାରୀ ଯେଉଁମାନେ ଖାଲି ଆଖିକୁ ଦେଖାଯାଆନ୍ତି ନାହିଁ । ଏପରି ଅଦୃଶ୍ୟ ଉପକାରୀ ଓ ହିତକାରୀଗୁଡ଼ିକ ଅଦୃଶ୍ୟ ଭାଷାରେ ଜୈବ ରାସାୟନିକ ପ୍ରକ୍ରିୟା ମାଧ୍ୟମରେ ଭାତର ପାଣିକୁ ତୋରାଣିରେ ପରିଣତ କରିଦିଅନ୍ତି । ସେଥିପାଇଁ ତୋରାଣିର ବର୍ଣ୍ଣ ଦୁଧିଆଳିଆ ବା ଇଷତ୍ ଧଳା ବର୍ଣ୍ଣର ଦେଖାଯାଏ । ଆଉ ଏ ତୋରାଣି ସାମାନ୍ୟ ଖଟା ଲାଗେ । ଯେତେ ଅଧିକ ଦିନ ରହିବ, ଏ ତୋରାଣିର ବର୍ଣ୍ଣ ଧୀରେ ଧୀରେ ଅଧିକ ଧଳା ଦେଖାଯିବ ଓ ଅଧିକ ଖଟା ଲାଗିବ ।

ତୋରାଣି ହେଉଛି ବୀଜାଣୁ ଦ୍ୱାରା ସୃଷ୍ଟି ହେଉଥିବା ଧଳାଳିଆ ପାଣି, ଯାହା ପାଟିକୁ ଖଟା ଲାଗେ । ଏହା ମୁଖ୍ୟତଃ ଲାକ୍ଟୋବାସିଲସ୍ ନାମକ ବୀଜାଣୁ ଦ୍ୱାରା ଘଟିଥାଏ । ଆଉ ଏ ପ୍ରକାର ବୀଜାଣୁ ବିଭିନ୍ନ ଜାତିର ଆମ ଚାରିପଟେ ଥାଆନ୍ତି । ଆମେ ଭାତ ତିଆରି କରି ପାଣି ପୂରାଇ ଦେଲେ ଆମ ବାୟୁମଣ୍ଡଳରେ ଥିବା ବିଭିନ୍ନ ପ୍ରକାର ଲାକ୍ଟୋବାସିଲସ୍ ବୀଜାଣୁ ସେଠାକୁ ଯାଇ କିଣ୍ୱନ ପ୍ରକ୍ରିୟାରେ ଲାଗି ଭାତକୁ ଖଟା କରିବାର ଲାଗି ପଡ଼ନ୍ତି ।

***ସାରଣୀ ୧ :* ସଜଭାତକୁ ବାସି କରିବାରେ ବିଭିନ୍ନ ପ୍ରକାର ବୀଜାଣୁ**

| **କ୍ରମିକ ସଂଖ୍ୟା** | **ବୀଜାଣୁ ବା ବ୍ୟାକ୍ଟେରିଆର ବୈଜ୍ଞାନିକ ନାମ** |
|---|---|
| ୧) | Lactobacillus neuteri |
| ୨) | Lactobacillus acidophilus |
| ୩) | Lactobacillus brevis |
| ୪) | Lactobacillus Peantarum |
| ୫) | Leuconostoc Mesenteroides |

ଭାତ କିଣ୍ୱନ ପ୍ରକ୍ରିୟାରେ ଖଟା ହେବା ଯୋଗୁଁ ସେଥିରୁ ଚର୍ବି ଅଂଶ କମିଯାଏ । ଆଉ ଅଧିକ ହୋଇଯାଏ ପୁଷ୍ଟିସାର । ତେଣୁ ଖାଦ୍ୟ ସହଜରେ ହଜମ ହୋଇଯାଏ । ପୁନଶ୍ଚ ଏହା ଲେସିଥିନ୍, ଟ୍ରିପ୍‌ସିନ୍ ନାଶକ ଆଦି ପୁଷ୍ଟି ନାଶକ କାରକ ହ୍ରାସ କରିଥାଏ । ଏଥିସହ କ୍ୟାଲ୍‌ସିୟମ୍ ଲୌହ ଆଦି ଅଣୁପୁଷ୍ଟିଗୁଡ଼ିକ ବିଶୋଧିତ ହେବାରେ ସହାୟକ ହୋଇଥାଏ । ଗବେଷଣାରୁ ଦେଖାଯାଇଛି ଯେ ପଖାଳ ଭାତରେ ଗରମ ଭାତ ଅପେକ୍ଷା ଦୁଇଗୁଣ ଅଧିକ ପୁଷ୍ଟିସାର ଓ ଫସ୍‌ଫରସ୍ ରହିଥାଏ । ମୋଟାମୋଟି ବ୍ୟାକ୍ଟେରିଆ ବା ବୀଜାଣୁ ଓ ଅନ୍ୟ ଏକ ବୀଜାଣୁ ନିମ୍ନ ପ୍ରକାରରେ ରାସାୟନିକ ପ୍ରକ୍ରିୟା ସମାହିତ କରନ୍ତି ।




**ପଖାଳର ଉପାଦାନ ବା ରାସାୟନିକ ବା ପୌଷ୍ଟିକ ଗୁଣ**

ପଖାଳ ଏପରି ଏକ ପ୍ରାକୃତିକ ଭାବେ ପ୍ରସ୍ତୁତ ଖାଦ୍ୟ ଯାହାର ପୌଷ୍ଟିକ ଗୁଣ ଅନନ୍ୟ ।

***ସାରଣୀ ୨ :* ପଖାଳ ଭାତରେ ବିଭିନ୍ନ ପୌଷ୍ଟିକ ଉପାଦାନ ।**

| **କ୍ରମିକ ସଂଖ୍ୟା** | **ଉପାଦାନର ନାମ** |
|---|---|
| ୧) | ପଟାସିୟମ୍ |
| ୨) | ଆଇଓଡ଼ିନ୍ |
| ୩) | ମାଗ୍‌ନେସିୟମ୍ |
| ୪) | ଦସ୍ତା |
| ୫) | ସେଲେନିୟମ୍ |
| ୬) | ମାଙ୍ଗାନିଜ୍ |
| ୭) | ଭିଟାମିନ୍-ବି, ବି ୧୨, ସି, ଇ |
| ୮) | ଆଣ୍ଟିଅକ୍‌ସିଡ଼ାଣ୍ଟ |
| ୯) | ଖଣିଜଲବଣ ବା ଧାତବଲବଣ |
| ୧୦) | ପୁଷ୍ଟିସାର |
| ୧୧) | ଇନୋସିଟଲ |
| ୧୨) | ତନ୍ତୁ |
| ୧୩) | ପ୍ରୋବାଇଓଟିକ୍ |
| ୧୪) | ଲୌହ |

ଏହା ସ୍ୱାସ୍ଥ୍ୟପ୍ରଦ, ସ୍ୱାସ୍ଥ୍ୟରକ୍ଷାକାରୀ ଓ ଶରୀର ସୁରକ୍ଷାକାରୀ ଭାବରେ ପରିଗଣିତ ତଥା ବୈଜ୍ଞାନିକ ସମ୍ମତର କାରଣ ହେଉଛି ଏଥିରେ ଥିବା ବିଭିନ୍ନ ରାସାୟନିକ ଗୁଣ ବା ଖାଦ୍ୟ ଉପାଦାନର ସ୍ଥିତି ।

ଏତେଗୁଡ଼ିଏ ପୌଷ୍ଟିକ ଗୁଣ ସତରେ ପଖାଳ ଭାତରେ ଲୁଚି ରହିଥାଏ । ସେଥିପାଇଁ ପଖାଳ ଭାତଖିଆ ମଣିଷ ବା ପିଲାମାନେ ଠିକ୍ ଥାଆନ୍ତି ତାଙ୍କର ସ୍ୱାସ୍ଥ୍ୟ କ୍ଷେତ୍ରରେ । ଆଉ ଗାଁ ଗହଳି ପିଲାମାନଙ୍କର ସେଥିପାଇଁ ଶକ୍ତି ଓ ରୋଗପ୍ରତିରୋଧକ ଶକ୍ତି ମଧ୍ୟ ଥାଏ ଅଧିକ । ଏବେ ଦେଖିବା ସଜ ଭାତ ଓ ପଖାଳ ଭାତ ମଧ୍ୟରେ ଶକ୍ତି ଓ ପୌଷ୍ଟିକ ଗୁଣର ମାତ୍ରା କେତେ ।

***ସାରଣୀ ୩ :* ସଜ ଭାତ ଓ ପଖାଳ ଭାତର ପୌଷ୍ଟିକ ଗୁଣ**

| କ୍ରମିକ ସଂଖ୍ୟା | ଉପାଦାନ | ସଜଭାତ (୧୦୦ ଗ୍ରାମ୍) | ପଖାଳ ଭାତ (୧୦୦ ଗ୍ରାମ୍) |
|---|---|---|---|
| ୦୧ | ଲୌହ | ୩.୪ ମି.ଗ୍ରା. | ୭୩.୯୧ ମି.ଗ୍ରା. |
| ୦୨ | ପଟାସିୟମ୍ | ୫୯ ମି.ଗ୍ରା. | ୮୩୯ ମି.ଗ୍ରା. |
| ୦୩ | କାଲସିୟମ୍ | ୨୧ ମି.ଗ୍ରା. | ୮୫୦ ମି.ଗ୍ରା. |
| ୦୪ | ସୋଡ଼ିୟମ୍ | ୪୭୫ ମି.ଗ୍ରା. | ୩୦୩ ମି.ଗ୍ରା. |
| ୦୫ | ଶକ୍ତି | ୧୩୨ କ୍ୟାଲୋରୀ | ୫୨ କ୍ୟାଲୋରୀ |

ଏ ସାରଣୀରୁ ଆମେ ଦେଖି ଜାଣିପାରିବା ଯେ ସଜ ଓ ବାସି ବା ପଖାଳ ଭାତର ପ୍ରଭେଦ କଅଣ । ସତରେ ପଖାଳ ଭାତ ଏତେ ଅଧିକ ପୁଷ୍ଟିକର ଗୁଣ ଦେଖିଲେ ଲାଗେ ଯେ ପୁରୁଣା ଗାଁ ଗହଳି ବା ମଫସଲ ଲୋକ ଓ ପିଲାଙ୍କର ଶାରୀରିକ ଗଠନ, ଶକ୍ତି, କାର୍ଯ୍ୟ କରିବାର କ୍ଷମତା ଓ ସହଜରେ ରୋଗ ନ ହେବା ପଛରେ କାରଣ କଅଣ ରହିଛି । ଏହା ପଛରେ ରହିଛି ସେମାନଙ୍କର ନିମ୍ନ ପ୍ରଦତ୍ତ କାରଣ ।




***(ଗାଁ ଗହଳି ବା ମଫସଲ ସ୍ଥାନର ବ୍ୟକ୍ତିମାନଙ୍କ ଭଲ ସ୍ୱାସ୍ଥ୍ୟର କାରଣଗୁଡ଼ିକ)***

(୧) ଜୀବନଚର୍ଯ୍ୟା

(୨) ଖାଦ୍ୟ ପ୍ରଣାଳୀ ବା ଖାଦ୍ୟ ଶୈଳୀ ବା ପ୍ରାକୃତିକ ଘରୋଇ ଖାଦ୍ୟ

(୩) ସଦା ଖାଦ୍ୟ ବା ଫାଷ୍ଟ ଫୁଡ଼ଠାରୁ ଦୂରତା

(୪) ଖେଳ କୁଦ, ଗଛ ଚଢ଼ା, ପୋଖରୀ ଓ ନଦୀରେ ପହଁରା

(୫) ପ୍ରାକୃତିକ ପରିବେଶ ସହିତ ସଂପୃକ୍ତି

(୬) ପଖାଳ, ପନିପରିବା ପରି ଖାଦ୍ୟ ଯାହା ରସାୟନବିହୀନ ।

**ପଖାଳ ଭାତର ଉପକାର**

ଏତେ କଥା ଆଲୋଚନା ପରେ ବା ପଖାଳର ଏତେ ଗୁଣବତ୍ତା ବା ପୌଷ୍ଟିକ ତତ୍ତ୍ୱ ଅବଲୋକନ କରିବା ପରେ ଏବେ ଆଲୋଚନା କରିବା ପଖାଳ ଭାତ ଖାଇବା କାହିଁକି ବା ପଖାଳ ଭାତର ଉପକାରିତା କଅଣ ।

(୧) ଭିଟାମିନ୍‌ରେ ଭରପୂର ଅର୍ଥାତ୍ ଭିଟାମିନ୍ ବି, ବି–୧୨, ସି ଏବଂ ଇ ଯୁକ୍ତ ।

(୨) ପ୍ରୋବାଇଓଟିକ୍ ଯୁକ୍ତ ଯାହା ଅନ୍ତନଳୀ ଜୀବାଣୁଙ୍କୁ ସୁରକ୍ଷା ଦିଏ ।

(୩) ରୋଗ ପ୍ରତିରୋଧକ ଶକ୍ତି ବର୍ଦ୍ଧକ ।

(୪) ଅନ୍ତନଳୀ ରୋଗ ପ୍ରତିରୋଧକ ବା ଅନ୍ତନଳୀ ସହାୟକ ।

(୫) କ୍ୟାଲ୍‌ସିୟମ୍, ମ୍ୟାଗ୍ନେସିୟମ୍, ପଟାସିୟମ୍, ସୋଡ଼ିୟମ୍ ଓ ଲୌହ ଆଦି ପରି ଅଣୁପୁଷ୍ଟିଧାରକ ।

(୬) ଆମିନୋ ଅମ୍ଳ ଓ ଲାକ୍‌ଟିକ୍ ଅମ୍ଳ ଯୁକ୍ତ ।

(୭) ତୋରଣି ଶରୀରକୁ ଯୋଗାଇଥାଏ ଜଳୀୟଅଂଶ । ଜଳୀୟଅଂଶ ଦୂରରୁ ରକ୍ଷା କରେ ।

(୮) ଭିଟାମିନ୍ ବି ସହାୟକ ହୋଇଥାଏ ପାକସ୍ଥଳୀ ଘାଆରୁ ।

(୯) ଚର୍ମ ଓ କେଶର ସୁରକ୍ଷାକାରୀ ତଥା ସୌନ୍ଦର୍ଯ୍ୟବର୍ଦ୍ଧକ ।

(୧୦) ମୁଣ୍ଡର ରୂପୀ ଦୂରକାରୀ ।

(୧୧) ସହଜ ଓ ସରଳ ଖାଦ୍ୟ ଯୋଗୁଁ ହଜମ ପ୍ରକ୍ରିୟା ସରଳଯୁକ୍ତ ।

(୧୨) ମାନସିକ ସ୍ଥିତି ଓ ସନ୍ତୁଳିତ ଶରୀର ପ୍ରକ୍ରିୟା ସହାୟକ ।

(୧୩) ମେଦବୃଦ୍ଧି ହ୍ରାସକ ।

(୧୪) ଇନୋସିଟଲ କୋଷ ସୁରକ୍ଷାକାରୀ ତଥା କୋଷବର୍ଦ୍ଧକ ।

(୧୫) ହୃତ୍‌ପିଣ୍ଡ ସୁରକ୍ଷାକାରୀ ।

(୧୬) ଅଣୁପୁଷ୍ଟିଯୁକ୍ତ ଥିବାରୁ ଶରୀରକୁ ଅଣୁପୁଷ୍ଟି ଯୋଗାଇବାର ପୀଠ ।

(୧୭) ଆଣ୍ଟିଅକ୍ସିଡାଣ୍ଟଯୁକ୍ତ ହୋଇଥିବାରୁ ରୋଷ ଦୂରକାରୀ ସହ ଶରୀରର ରୋଗ ପ୍ରତିରୋଧକ ଶକ୍ତିବର୍ଦ୍ଧକ ।

(୧୮) ବିଭିନ୍ନ ମେଟାବୋଲାଇଟ୍ ଯୁକ୍ତ ହୋଇଥିବାରୁ ଶରୀରକୁ ବୀଜାଣୁ ବା ବ୍ୟାକ୍ଟେରିଆ ସଂକ୍ରମଣର ସୁରକ୍ଷାକାରୀ ।

(୧୯) ପି.ଏଚ.ର ମାତ୍ରା ୬ ହେତୁ ପୁଷ୍ଟିଗୁଡ଼ିକର ଉତ୍ତମ ରୂପେ ଅବଶୋଷଣ ଘଟିଯାଏ ।

(୨୦) ତୋରାଣି ଅନେକ ପ୍ରକାର କ୍ଷୁଦ୍ର ଶୁକୁଳି ମେଦ ଅମ୍ଳ ଉତ୍ପନ୍ନ ଦ୍ରବ୍ୟହିଁ ଫୁଲା ଓ ଦରଜରୁ ରକ୍ଷା କରିଥାଏ ।

(୨୧) ବାସି ତୋରାଣି ଯାହା ଖଟା ଲାଗେ ତାହା ଭୂତାଣୁ ବିପକ୍ଷରେ କାର୍ଯ୍ୟ କରିଥାଏ ।

(୨୨) କୋଷ୍ଠକାଠିନ୍ୟ ଦୂରକାରୀର କାରଣ ତନ୍ତୁଯୁକ୍ତ ।

(୨୩) ସୁସ୍ଥ ଜୀବନର ମୂଳପିଣ୍ଡ ।

(୨୪) ଅନ୍ତନଳୀର ସୁରକ୍ଷା ସହ ଅନ୍ତନଳୀର ବୀଜାଣୁ ବର୍ଦ୍ଧକ ।

(୨୫) କ୍ୟାଲୋରୀ କମ୍ ହେତୁ ଚର୍ବିବୃଦ୍ଧି ନିବାରକ ।

(୨୬) ସରଳ ପେପ୍‌ଟାଇଡ଼ ଯୁକ୍ତ ହୋଇଥିବାରୁ ଥକାପଣ ଦୂରକାରୀ ।

(୨୭) ହଜମ ପ୍ରକ୍ରିୟାକୁ ସୁରୁଖୁରୁରେ ସରଳ କରିବାର ଅବ୍ୟର୍ଥ ଔଷଧ ।

**ପଖାଳ : ଭବିଷ୍ୟତ ସ୍ୱାସ୍ଥ୍ୟର ବିକଳ୍ପ ଔଷଧ**

ପାରମ୍ପରିକ ଖାଦ୍ୟର ସତରେ ବିକଳ୍ପ ନାହିଁ । ଆମର ପର୍ଯ୍ୟବେକ୍ଷଣ, ଅନୁଧାନ, ଅନୁଶୀଳନ, ଅନୁସନ୍ଧାନ ତଥା ଅନୁକରଣର ଫଳ ଦେଇଥିଲା ଉତ୍ତମ ସ୍ୱାସ୍ଥ୍ୟ, ଉତ୍ତମ ଗୁଣ, ଉତ୍ତମ ପୁଷ୍ଟି ତଥା ଉନ୍ନତ ଓ ସନ୍ତୁଳିତ ଖାଦ୍ୟ । ଏତେ ସରଳ, ସ୍ୱାସ୍ଥ୍ୟପ୍ରଦ, ହିତକର, ପୁଷ୍ଟିକର ଓ ରୋଗହାରୀ ଖାଦ୍ୟ ପୃଥିବୀର ବିରଳ । ଆମର ଗବେଷଣା ଏ ଦିଗରେ ବୈଜ୍ଞାନିକଗଣ ଜାରି ରଖିଲେ ମଧ୍ୟ ଅଣବୈଜ୍ଞାନିକଗଣ ଯେଉଁମାନେ ଆମର ପୂର୍ବସୂରୀ ସେମାନେ ତାଙ୍କର ଅଭିଜ୍ଞତା ଓ ଅନୁଭବରୁ ବୁଝିପାରିଥିଲେ ଯେ, ପଖାଳ କଅଣ, ପଖାଳ କାହିଁକି ଓ ପଖାଳ କିପରି ବ୍ୟବହାର କରିପାରିବା । ତା'ର ଗୁଣ ଯୋଗୁଁ ହଜି ଯାଇଥିବା, ଲୋପ ପାଇଯାଇଥିବା ବା ଭୁଲି ଯାଇଥିବା ପଖାଳକୁ ସମଗ୍ର ବିଶ୍ୱ ଆଜି ମନେ ପକାଇ ପାଳୁଛି 'ବିଶ୍ୱ ପଖାଳ ଦିବସ' ।

**ବର୍ତ୍ତମାନ ପଖାଳର ଆଦୃତି ଓ ସ୍ୱୀକୃତି**

ଆରମ୍ଭ ହୋଇଥିଲା ବା ଜନ୍ମ ନେଇଥିଲା ଏ ଦିବସ ମାର୍ଚ୍ଚ ୨୦, ୨୦୧୫ ମସିହାରେ । ବର୍ତ୍ତମାନ ତାହା ବାସ୍ତବରେ ବେଶ୍ ଚର୍ଚ୍ଚିତ, ଆଲୋଚିତ, ବର୍ଣ୍ଣିତ, କଥିତ ଏବଂ ପ୍ରଚଳିତ ସବୁଠାରେ ଅର୍ଥାତ୍ ଘରେ, ବାହାରେ, ହୋଟେଲ୍‌ରେ ଓ ତାରକା ହୋଟେଲଗୁଡ଼ିକରେ । ଗ୍ରୀଷ୍ମ ତାପରେ ଥଣ୍ଡା ପଖାଳର ସ୍ୱାଦ ଓ ପୁଷ୍ଟି ସତରେ ମନୋଲୋଭା ଓ ମର୍ମସ୍ପର୍ଶୀ । ଖାଲି ଲେଖା ପଢ଼ାରେ ପାଳନ ନ କରି ଏ ଖାଦ୍ୟର ଆମେ ସମସ୍ତେ ଗୁରୁତ୍ୱ ଉପଲବ୍ଧି କରି ଫାଷ୍ଟ ଫୁଡ଼ଠାରୁ ଦୂରେଇ ନ ଗଲେ ଆମେ ନିଶ୍ଚୟ ରୋଗୀ ହେବା ସହ ରୁଗ୍‌ଣ ଜୀବନଯାପନ କରିବା ଶ୍ରେୟସ୍କର ହୋଇଯିବ । ତେଣୁ ଆସନ୍ତୁ ଆମେ ସମସ୍ତେ ଏକତ୍ରିତ, ମିଳିତ ଓ ସଙ୍ଗଠିତ ଭାବରେ ଆମର ପାରମ୍ପରିକ ପଖାଳକୁ ଖାଇବା ଓ ପରିବାରବର୍ଗଙ୍କୁ ପାରମ୍ପରିକ ଉତ୍କଳୀୟ ଖାଦ୍ୟରେ

ସାମିଲ କରିବା ସହ ନିଜକୁ ତଥା ନିଜ ପରିବାରବର୍ଗଙ୍କ ସୁସ୍ଥ ଓ ନିରାମୟ ଜୀବନଯାପନ କାମନା କରିବା । ଆଉ ରୋଗୀ ନ ହୋଇ ତ୍ୟାଗୀ, ଯୋଗୀ ଓ ଭୋଗୀ ହେବା । ପଖାଳ ଆମ ରାଜ୍ୟର ମାନ୍ୟତା ପାଉ ଓ ଟାଗ୍ ହେଉ । ସତରେ ପଖାଳ ଆମର ସରଳ, ବିରଳ ଓ ରସାଳ ଖାଦ୍ୟ । ପ୍ରାକୃତିକ ଘରୋଇ ଖାଦ୍ୟ ଭାବରେ ଏହାର ସ୍ଥାନ ଓ ମାନ ଖୁବ୍ ଶୀର୍ଷରେ ।

କୁଳପତି, ଖଲ୍ଲିକୋଟ ଏକକ ବିଶ୍ୱବିଦ୍ୟାଳୟ
ବ୍ରହ୍ମ ବିହାର, ବ୍ରହ୍ମପୁର, ଗଞ୍ଜାମ–୭୬୦୦୦୧

## 'ଉତ୍କଳ ପ୍ରସଙ୍ଗ' ଏବଂ 'ଓଡ଼ିଶା ରିଭ୍ୟୁ'ର ନୂତନ ଇ–ମେଲ୍ ଆଇ.ଡି.

ଓଡ଼ିଶା ସରକାରଙ୍କ ଦ୍ୱାରା ପ୍ରକାଶିତ ମାସିକ ପତ୍ରିକା 'ଉତ୍କଳ ପ୍ରସଙ୍ଗ' ଏବଂ 'ଓଡ଼ିଶା ରିଭ୍ୟୁ'ର ଇ–ମେଲ୍ ଆଇ.ଡି. ବଦଳି ଯାଇଥିବାରୁ ପ୍ରକାଶନ ନିମନ୍ତେ ଲେଖାଗୁଡିକ ଏଣିକି ପ୍ରତ୍ୟେକ ମାସରେ ପୁରୁଣା ଇ–ମେଲ୍ ଆଇ.ଡି. ପରିବର୍ତ୍ତେ ନୂତନ ଇ–ମେଲ୍ ଆଇ.ଡି. uporipr@gmail.comରେ ପଠାଇବା ନିମନ୍ତେ ଲେଖକ/ଲେଖିକାମାନଙ୍କୁ ଅନୁରୋଧ କରାଯାଉଛି ।

ନିର୍ଦ୍ଦେଶକ
ସୂଚନା ଓ ଲୋକସମ୍ପର୍କ ବିଭାଗ
ଓଡ଼ିଶା ସରକାର

❖ ❖ ❖

# କ'ଣ ଛାଡ଼ିଯିବେ ପିଲାଙ୍କ ପାଇଁ

**ବ୍ରତତୀ ହରିଚନ୍ଦନ**

ସକାଳ ଖଟିରୁ ଖବରଟି ପାଇ ଦିନାନାଥ ବାବୁ ସ୍ତମ୍ଭୀଭୂତ । ଗତକାଲି ବିଳମ୍ବିତ ସଂଧ୍ୟାରେ ବୈକୁଣ୍ଠ, ତାଙ୍କର ଜୁନିୟର ସହକର୍ମୀର ହୋଇଛି ଆକସ୍ମିକ ହୃଦ୍‌ଘାତ । ପ୍ରାୟ ଶେଷ ଅବସ୍ଥା – ଡାକ୍ତର ନାସ୍ତିବାଣୀ ଶୁଣାଇ ସାରିଲେଣି । ପିଲାମାନଙ୍କୁ ସେହି ଅନୁସାରେ ଖବର ଗଲାଣି । ପିଲାମାନେ ସବୁ ତା'ର ବାହାରେ, ଘରେ କେବଳ ସ୍ତ୍ରୀ । ସେ ପୂରା ଅଚଳ ଦୋଅଣି । ବାହାର ଦୁନିଆକୁ ପ୍ରବେଶ ନଥିବା ଘରୋଇ ପ୍ରାଣୀଟିଏ । ରୋଷେଇବାସ କରି ଘର ଜଗିବା ଛଡା, ସେ ଆଉ କିଛି ପାରେନି । ପିଲା ଛୁଆ, ଘର ବାହାର, ଗାଁ, ଚାଷବାସ, ବନ୍ଧୁ ବେଭାର ସବୁକଥା ବୈକୁଣ୍ଠ ହିଁ ବୁଝେ । ନିଷ୍ଠାପର କର୍ମଚାରୀ ହିସାବରେ ବି ତାର ବେଶ୍ ସୁଖ୍ୟାତି ଥିଲା । ଅଧିକାଂଶ ସମୟ, ସମ୍ବଳ ଓ ସଞ୍ଚୟ ତା'ର ଏସବୁଥିରେ ଖର୍ଚ୍ଚ କରିବା ପରେ ତା' ପରି ବେହିସାବୀ ଲୋକଟି ନିଜ ପାଇଁ ସେମିତି କିଛି ରଖିନାହିଁ । ଖଟିରୁ ଦିନାନାଥ ବାବୁ ଯାହା ବୁଝିଲେ, ଗତ ରାତିରେ ହିଁ ତା'ର ହୃଦ୍‌ଘାତ ପରେ ତାଙ୍କୁ ଡାକ୍ତରଖାନା ନେଇଛନ୍ତି ତା'ର ଦୁଇଜଣ ପଡୋଶୀ ।

ଖବରଟି ପାଇ ସେ ଓ ଆଉ ଜଣେ ବଂଧୁ ସଂଗେ ସଂଗେ ମିଶି ପହଞ୍ଚିଲେ ବୈକୁଣ୍ଠ ଘରେ । ଯାହା ଅନୁମାନ କରିଥିଲେ ପ୍ରକୃତରେ ସେୟା, ସବୁ ବିପର୍ଯ୍ୟସ୍ତ । ବୈକୁଣ୍ଠର ସ୍ତ୍ରୀ ଘରେ ହାଁ କରି ଖଟଟା ଉପରେ ପଡିଛି, ଘରେ ଟଙ୍କା ପଇସା, ବ୍ୟାଙ୍କ୍ ଆକାଉଣ୍ଟ ବିଷୟରେ କିଛି ବି କହିପାରୁନି । ଏମିତିକି ବୈକୁଣ୍ଠର ପୁରୁଣା ମେଡିକାଲ ରେକର୍ଡ ବିଷୟରେ ବି ସେ ସମ୍ପୂର୍ଣ୍ଣ ଅଜ୍ଞ, ପଡୋଶୀମାନେ ଗାଁରୁ ପୁତୁରାକୁ ଡାକି କାମ ଚଳାଉଛନ୍ତି ।

ଏ ଦୃଶ୍ୟଟି ଏତେ ଭୟଙ୍କର ଥିଲା ଯେ, ଦିନାନାଥ ବାବୁ ଆଉ ଡାକ୍ତରଖାନାକୁ ଯାଇ ବୈକୁଣ୍ଠକୁ ଦେଖିବାକୁ ଚିନ୍ତା କରୁକରୁ କେତେବେଳେ ଯେ ନିଜ ଘରେ ପହଞ୍ଚି ଯାଇଛନ୍ତି, ଜାଣନ୍ତିନି ।

ଘନିଷ୍ଠ ବଂଧୁ ବୈକୁଣ୍ଠର ଅବସ୍ଥା ଭାବୁ ଭାବୁ ହଠାତ୍ ତାଙ୍କର ବୋଧ ହେଲା, ଆରେ ବୈକୁଣ୍ଠ କ'ଣ ? ଏ ଅବସ୍ଥା ତାଙ୍କର ବି ହୋଇପାରେ । ଅବଶ୍ୟ ସେ ବୈକୁଣ୍ଠ ପରି ବେହିସାବୀ ନୁହନ୍ତି । ବେଶ୍ ମପାଚୁପା ଜୀବନ ତାଙ୍କର ।

ହେଲେ ବୈକୁଣ୍ଠ ପରି ତାଙ୍କର ମଧ୍ୟ ପିଲା ଦୁହେଁ ବାହାରେ, ବିଦେଶରେ । ଘରେ ସ୍ତ୍ରୀର ଅବସ୍ଥା ବି ଠିକ୍ ନାହିଁ, ପିଲାମାନେ ବାହାରକୁ ଚାଲିଯିବା ପରେ ଏକ ପ୍ରକାର ଅବସାଦଗ୍ରସ୍ତ । ନିଜ ଚିନ୍ତାପଟରୁ କେତେବେଳୁ ସେ ବୈକୁଣ୍ଠକୁ ଉଠେଇ ନିଜେ ଜାଗା ନେଇ ଗଲେଣି ଜାଣିନାହାନ୍ତି ।

ରୋଗ ଶୋକ ହେଉ ଅବା ମୃତ୍ୟୁ ସେ କ'ଣ ଜଣେଇକି ଆସେ ? ଏ ସବୁ ସମୟ ପାଇଁ କେତେ ପୂର୍ବ ପ୍ରସ୍ତୁତି ଓ ସଚେତନତା ଜରୁରୀ, ବୈକୁଣ୍ଠ କେଶ୍‌ରୁ ହିଁ ସେ ଜାଣିପାରିଛନ୍ତି । ଏଣୁ ତାଙ୍କର ବର୍ତ୍ତମାନଠାରୁ ହିଁ

ପ୍ରଥମ ଚିନ୍ତା ହେଲା, ଆଗ ପାଇଁ, ପିଲାଙ୍କ ପାଇଁ ସେ କ'ଣ ସଜାଡି, ଛାଡି ଯିବେ ଯେ ଏପରି କୌଣସି ଅସୁବିଧା ତାଙ୍କ ଘରେ ହେବନି । ସ୍ଥିର କଲେ, ସେ ସବୁ ଜିନିଷ ଲେଖି ପିଲାଙ୍କ ପାଇଁ ରଖିନେବେ ତାଙ୍କ ବୁଝିବା ଭାଷାରେ । ଘରଦ୍ୱାର, ଜମିବାଡ଼ି, ସ୍ଥାବର ଅସ୍ଥାବର ସମ୍ପତ୍ତିର ବିବରଣୀ ହେଉ କି ଧାରକରଜ, ଇନ୍‌ସୁରାନ୍ସ, ମେଡିକାଲ କାଗଜପତ୍ର ସମସ୍ତଙ୍କର, ବଂଧୁ ବାଂଧବଙ୍କ ଠିକଣା, ପର୍ବପର୍ବାଣି, ବେଭାର ସଂଖୁଳା ସବୁର ବିବରଣୀ ବନେଇ ସବୁ ଡକୁମେଣ୍ଟ୍‌କୁ ଫାଇଲରେ ସଜାଇ ରଖିଦେବେ । ଏବେ ସେ ନିଜେ ବୁଝୁଛନ୍ତି ଏଣୁ ସଜାଡି ପାରିନାହାନ୍ତି । କିନ୍ତୁ କାଲି କିଛି ଅସୁବିଧା ହେଲେ ଯେମିତି ପିଲାମାନେ ଆଉ ଦରାଣ୍ଡି ହେବେନି । ତାଙ୍କର ଅବର୍ତ୍ତମାନରେ ପିଲାମାନେ କ'ଣ କରିବେ ନ କରିବେ ତାଙ୍କୁ ବି ବୁଝାଇ ଲେଖିନେବେ । ପିଲାମାନେ ତାଙ୍କର ସୁଧାର, ନିଶ୍ଚୟ ତାଙ୍କ ଉପଦେଶ ମାନିବେ ।

ଭାବୁ ଭାବୁ ପିଲାମାନଙ୍କ ମୁହଁ ଆଖି ଆଗରେ ନାଚିଗଲା । ଦିନେ ବି କିଛି କରିବାକୁ ଦେଇନାହାନ୍ତି ସେମାନଙ୍କୁ । ସବୁ ସେ ନିଜେ ସ୍ଥିର କରନ୍ତି । କାଲି ଯଦି ତାଙ୍କର ଏମିତି କିଛି ହୋଇଯାଏ , ତାଙ୍କ ପିଲା ଯେମିତି ହଇରାଣ ନ ହୁଅନ୍ତି । ଏତିକି କାମ ସାରିଲେ ହିଁ ଯାଇ ତାଙ୍କର ନିଷ୍କୃତି । ଶାନ୍ତି ରେ ଅନ୍ତତଃ ମରିପାରିବେ ।

ହେଲେ ପରବର୍ତ୍ତୀ ସମୟରେ ଯେଉଁ କିଛି ଦିନ ବୈକୁଣ୍ଠର କାମ କାର୍ଯ୍ୟ ଚାଲିଲା ଏବଂ ଯେଉଁଭଳି ସବୁ ଶେଷ ହେଲା ଏଥିରେ ଦିନାନାଥ ବାବୁଙ୍କର ସମସ୍ତ ଆକଳନ ଫେଲ୍ ମାରିଲା । ବୈକୁଣ୍ଠ କ୍ଷେତ୍ରରେ ତାଙ୍କର ଯେଉଁ ଆଶଂକା ଜନ୍ମିଥିଲା, ତାହା ସଂପୂର୍ଣ୍ଣ ଅମୂଳକ ଓ ବେଠିକ୍ ସାବ୍ୟସ୍ତ ହେଲା । ବୈକୁଣ୍ଠ ଯେମିତି ବିନା କଷ୍ଟ, ବିନା ଟଣା ଘୋଷରାରେ ଚାଲିଗଲା, ତ'ା କାମ ବି ସେମିତି ସୁରୁଖୁରୁରେ ସୁନ୍ଦର, ସହଜ ଭାବରେ ଶେଷ ହେଲା । ବୈକୁଣ୍ଠର ଅବର୍ତ୍ତମାନରେ, ଦାରୁଣ ଦୁଃଖରେ ହତଭମ୍ବ ହୋଇପଡ଼ିଥିବା ପିଲାମାନଙ୍କୁ ବାଟ କଢ଼ାଇ ନେବା ପାଇଁ ସଦିଚ୍ଛାର ସହସ୍ର ହାତ ଏମିତି ବଢିଆସିବ ଓ ସବୁକୁ ସୁନ୍ଦର ଭାବରେ ଚଳେଇ ନେବ, ଏହା ଥିଲା ଦିନାନାଥ ବାବୁଙ୍କ ପାଇଁ କଳ୍ପନାତୀତ, ଅବିଶ୍ୱସନୀୟ । ତାଙ୍କ ଜାଣତରେ ତ ବୈକୁଣ୍ଠ କିଛି ବି ସଜାଡି ଛାଡି ଯାଇ ନାହିଁ ପିଲାଙ୍କ ପାଇଁ, ଚାଲିଗଲା ବିନା ପ୍ରସ୍ତୁତିରେ ତେବେ ସେ କାହିଁକି ଏତେ ଚିନ୍ତା କରୁଛନ୍ତି, କେମିତି କ'ଣ ସଜାଡି ଛାଡି ଯିବେ ପିଲାଙ୍କ ପାଇଁ ? ସତରେ କ'ଣ ଛଡାଯାଇପାରିବ ?

ଏ ସଂସାର ଅଳିକ, ମଣିଷର ହିସାବ ନିକାଶ ଗୋଟେ ପଟେ, ଉପର ବରାଦ ଆଉ ଗୋଟେ ପଟେ । ମଣିଷର କୌଣସି ସଞ୍ଚୟ, ସମ୍ବଳ ବା ସମ୍ପତ୍ତି ତା' ପିଲାଙ୍କର ଭାଗ୍ୟ ବଦଳାଇ ଦିଏନି ।

ଯଦି ସେମିତି ହୋଇଥାନ୍ତା କୌଣସି ଧନୀ, ରାଜା ମହାରାଜା ଘର ପିଲା ଦୁର୍ଦ୍ଦିନର ସାମନା କରୁ ନଥାନ୍ତେ । ପିଲାଟି ଜନ୍ମ ହୁଏ ନିଜ ଭାଗ୍ୟ ଓ କର୍ମ ନେଇ, ପିଲାଙ୍କର ଭାଗ୍ୟ ନିର୍ଦ୍ଧାରଣ କରିବ ତାଙ୍କର ନିଜସ୍ୱ ଶିକ୍ଷା, ଦୀକ୍ଷା, ବୁଦ୍ଧି, ବିବେକ । ତେବେ ଯଦି ପିତାମାତାଙ୍କର କୌଣସି ଜିନିଷ ପିଲାଙ୍କ କାମରେ ଆସିବ ତା' ହେଲା ସେମାନଙ୍କ ଦ୍ୱାରା ଛାଡିଯାଇଥିବା ସଂସ୍କାର, ସୁକୃତ, ସମ୍ପର୍କ ଓ ସଂପ୍ରୀତି ।

ବାପା ମା'ଙ୍କ ପାଖରେ ସର୍ବଦା ଲୁକ୍କାୟିତ ଭାବରେ ଥାଏ ଏକ ଅହମିକା ଯେ ସେମାନେ ପିଲାଙ୍କର ଜନ୍ମଦାତା । ସେମାନେ ହିଁ ପିଲାମାନଙ୍କୁ ଏ ପୃଥିବୀକୁ ଆଣିଛନ୍ତି । ଏହା ଅର୍ଦ୍ଧ ସତ୍ୟ ହୋଇପାରେ କିନ୍ତୁ ସଂପୂର୍ଣ୍ଣ ସତ୍ୟ ଏହା ଯେ ପିଲାମାନେ ଏ ପୃଥିବୀକୁ ଆସିଛନ୍ତି ପିତାମାତାଙ୍କ ମାଧ୍ୟମରେ, ଜରିଆରେ, ସେମାନଙ୍କର ଇଚ୍ଛାରେ ନୁହେଁ ଈଶ୍ୱରଙ୍କ ନିର୍ଦ୍ଦେଶରେ । ତେବେ ସନ୍ତାନକୁ ଜନ୍ମ ଦେବା, ତାକୁ ଲାଳନ ପାଳନ କରିବା, ଉପଯୁକ୍ତ ଶିକ୍ଷା ସଂସ୍କାର ଦେଇ ଗଢିତୋଳିବାର ସଂପୂର୍ଣ୍ଣ ଦାୟିତ୍ୱ ବାପା ମା'ଙ୍କର ଓ ଶ୍ରେୟ ମଧ୍ୟ ତାଙ୍କର ।

ଯଦିଓ ମଣିଷ ଏକ ସାମାଜିକ ପ୍ରାଣୀ, ଦେଖାଯାଉଛି ଯେ ନିଜ ନିଜ ଜୀବନ ଜଞ୍ଜାଳ ଭିତରେ

ପେଶୀ ହୋଇ ଅନେକ ସମୟରେ ମଣିଷଟି ତା' ଚାରିପାଖର ଦୁନିଆଁ କଥାରେ ଧ୍ୟାନ ଦେଇ ପାରେନି । ବୃହତ୍ତର ପରିବାର, ସାଙ୍ଗସାଥି ତଥା ସମାଜ ପାଇଁ ତା'ର କର୍ତ୍ତବ୍ୟ କରିବାରେ ସାମର୍ଥ୍ୟ ହୁଏନି । ହେଲେ ପିଢ଼ି ପରେ ପିଢ଼ି ଗଢିଆସୁଥିବା ଏ ବିରାଟ ସଂପର୍କର ମାୟାଠୁ ନିଜକୁ ଦୂରେଇ ପାରେନି । କାରଣ ସେ ଜାଣେ ଏ ବିରାଟ ସଂପର୍କର କି ଶୀତଳ ଛାୟା । ଯେଉଁ ଛାଇ, ତା'ର ପିଲାମାନଙ୍କୁ ତା'ର ଅବର୍ତ୍ତମାନରେ ମଧ୍ୟ ଏକ ସ୍ୱାଭାବିକ ଏବଂ ସହଜ ଜୀବନ ବଞ୍ଚିବାରେ ସାହାଯ୍ୟ ଓ ସାମର୍ଥ୍ୟ ପ୍ରଦାନ କରେ ।

ମଣିଷ ଜୀବନ ମାନେ ତ ଦୁଃଖ କଷ୍ଟ ଭଲ ମନ୍ଦ ଲାଗି ରହିଛି । ତାକୁ ଟାଳିବାର ଶକ୍ତି ମଣିଷର ନାହିଁ । ତେବେ ସେହି ପୀଡାକୁ ସହଜ କରିବାରେ ସାହାଯ୍ୟ କରେ ସଂପର୍କ ଓ ସଂପ୍ରୀତିର ସେଇ ଶୀତଳ ଛାୟା ।

ଦିନାନାଥଙ୍କର ଆଉ ବୁଝିବାରେ ଅସୁବିଧା ହେଲାନି ଯେ ବୈକୁଣ୍ଠ ବୋଧହୁଏ ଏମିତି କିଛି ଛାଡିଯାଇଛି ତା' ପିଲାଙ୍କ ପାଇଁ, ସମସ୍ତଙ୍କ ଅଲକ୍ଷ୍ୟରେ ।

ରାଜ୍ୟ ଭିନ୍ନକ୍ଷମ ଆୟୁକ୍ତ
ଭିନ୍ନକ୍ଷମ ଆୟୋଗ କାର୍ଯ୍ୟାଳୟ, ତୋଷାଳି ଭବନ
ସତ୍ୟନଗର, ଭୁବନେଶ୍ୱର

❖ ❖ ❖

# ବିର୍ସା ମୁଣ୍ଡା



ଊନବିଂଶ ଶତାବ୍ଦୀର ଶେଷଭାଗରେ ଭାରତର ପୂର୍ବାଞ୍ଚଳ ଘଞ୍ଚ ଜଙ୍ଗଲ ମଧ୍ୟରେ ଯେଉଁ ବିପ୍ଳବର ସ୍ୱର ଝଙ୍କୃତ ହୋଇଥିଲା 'ଆବୁଆ ରାଜ ଇତେ ଜାନା, ମହାରାଣୀ ରାଜ ଟୁଣ୍ଡୁ ଜାନା' (ମହାରାଣୀଙ୍କ ସାମ୍ରାଜ୍ୟ ପତନ ହେଉ ଏବଂ ଆମ ସାମ୍ରାଜ୍ୟର ପ୍ରତିଷ୍ଠା ହେଉ) ତାହା ହିଁ ଥିଲା ବ୍ରିଟିଶ ରାଜ ପ୍ରତିଷ୍ଠା ବିରୁଦ୍ଧରେ ପ୍ରତିବାଦର ସ୍ୱର । ଏହି ଆନ୍ଦୋଳନର ମୁଖ୍ୟ ସୂତ୍ରଧର ମହାନ ବିପ୍ଳବୀ ବିର୍ସା ମୁଣ୍ଡାଙ୍କର ଜନ୍ମ ୧୮୭୫ ମସିହା ନଭେମ୍ବର ୧୫ ତାରିଖ ଦିନ ଅଧୁନା ଝାଡଖଣ୍ଡ ରାଜ୍ୟର ରାଞ୍ଚି ଜିଲ୍ଲା ଖୁଣ୍ଟି ସବ୍‌ଡିଭିଜନ ଅନ୍ତର୍ଗତ ଏକ ଅଖ୍ୟାତ ଗ୍ରାମରେ ହୋଇଥିଲା । ତାଙ୍କ ପିତାଙ୍କ ନାମ ଥିଲା ସୁଗନା ମୁଣ୍ଡା ଏବଂ ମାତାଙ୍କ ନାମ କରମୀ ମୁଣ୍ଡା ।

ବ୍ରିଟିଶ ଶାସନର ଦାସତ୍ୱରୁ ମୁକ୍ତି ପାଇବା ନିମନ୍ତେ ବିପ୍ଳବୀ ବିର୍ସା ମୁଣ୍ଡାମାନଙ୍କୁ ସଂଗଠିତ କରିବା ନିମନ୍ତେ କାର୍ଯ୍ୟପନ୍ଥା ଆରମ୍ଭ କଲେ । ସେତେବେଳେ ଜାଗିରିଦାର, ଜମିଦାର ଓ ଠିକାଦାରମାନେ ମୁଣ୍ଡା ତଥା ଆଦିବାସୀମାନଙ୍କ ଉପରେ ଅତ୍ୟାଚାର କରିବା ସହିତ ବିଭିନ୍ନ ଭାବରେ ଶୋଷଣ କରୁଥିଲେ ଏବଂ ଭୟଭୀତ କରି ରଖିଥିଲେ । ଏହିଭଳି ଏକ ସନ୍ଧିକ୍ଷଣରେ ମହାନ ବିପ୍ଳବୀ ତଥା ସ୍ୱାଧୀନଚେତା ବିର୍ସା ମୁଣ୍ଡାଙ୍କର ଆବିର୍ଭାବ ଘଟିଥିଲା । ସେ ମୁଣ୍ଡା ସଂପ୍ରଦାୟର ନେତୃତ୍ୱ ନେବା ସଂଗେସଂଗେ ବ୍ରିଟିଶ ଶାସନର ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ସଂଗ୍ରାମ କରିବାକୁ ସେମାନଙ୍କୁ ପ୍ରବର୍ତ୍ତାଇ ଥିଲେ ।

ତାଙ୍କର ବାଲ୍ୟ ଶିକ୍ଷା ସାଲଗାଠାରେ ଆରମ୍ଭ ହୋଇଥିଲା । ସେଠାରେ ତାଙ୍କର ଜଇପାଲ ନାଗଙ୍କ ସହିତ ସାକ୍ଷାତ ହୋଇଥିଲା । ସେ ତାଙ୍କଠାରୁ ମହାନ ଗ୍ରନ୍ଥ ରାମାୟଣ ଓ ମହାଭାରତର ବିଷୟବସ୍ତୁ ସଂପର୍କରେ ଅବଗତ ହୋଇଥିଲେ ଯାହାକି ତାଙ୍କର ପରବର୍ତ୍ତୀ ସଂଗ୍ରାମୀ ଜୀବନରେ ସହାୟକ ହୋଇଥିଲା । ଏହାପରେ ସେ ବୁରୁଜୁ ପ୍ରାଇମେରୀ ସ୍କୁଲରେ ଅଧ୍ୟୟନ କରିବା ସହିତ ଚାଇଁବସାର ମିଶନ ମଧ୍ୟଇଂରାଜୀ ବିଦ୍ୟାଳୟରେ ଶିକ୍ଷାଲାଭ

କରିଥିଲେ । ଏହି ସମୟରେ ସେ ଜର୍ମାନୀ ଶିକ୍ଷକ ଫାଦର ଡେଡ୍‌ଲକ୍ ଓ ଫାଦର ନୋଟ୍ରୋଟଙ୍କ ସଂସ୍ପର୍ଶରେ ଆସିଥିଲେ । ସରଳ ବିଶ୍ୱାସୀ ଆଦିବାସୀ ଭାଇଭଉଣୀମାନଙ୍କ ଉପରେ ଗୋରା ଶାସକମାନଙ୍କ ଅତ୍ୟାଚାର ଓ ଅମାନୁଷିକ ବ୍ୟବହାର ତାଙ୍କୁ ବିଶେଷ ଭାବେ ମର୍ମାହତ କରିଥିଲା ।

ସେସମୟରେ ଆଦିବାସୀମାନେ ବିଭିନ୍ନ ଦୁଃଖଦୁର୍ଦ୍ଦଶାରେ ସଢୁଥିଲେ । ବିର୍ସା ଲୋକମାନଙ୍କୁ ବିଭିନ୍ନ ରୋଗ ଓ ଦୁର୍ଦ୍ଦଶାରୁ ମୁକ୍ତ କରିବା ନିମନ୍ତେ ବଦ୍ଧ ପରିକର ଥିଲେ । ୧୮୯୪ ମସିହାରେ ଛୋଟ– ନାଗପୁର ଅଞ୍ଚଳ ଭୟଙ୍କର ମହାମାରୀର ସମ୍ମୁଖୀନ ହୋଇଥିଲା । ବିର୍ସା ସେସମୟରେ ପୀଡ଼ିତମାନଙ୍କର ଏଭଳି ସେବ ଶୁଶ୍ରୂଷା କରିଥିଲେ ଯଦ୍ଦ୍ୱାରା ସେ ଜନମାନସରେ ତ୍ରାଣକର୍ତ୍ତା ଭାବେ ପରିଗଣିତ ହେଲେ । ୧୮୯୪ ମସିହା ଅକ୍ଟୋବର ୧ ତାରିଖରେ ବିର୍ସାଙ୍କ ନେତୃତ୍ୱରେ ହଜାର ହଜାର ସଂଖ୍ୟକ ଆଦିବାସୀ ଜଙ୍ଗଲ ଦେୟ ହ୍ରାସ କରିବା ପାଇଁ ଚାଇଁବସା ଅଭିମୁଖେ ଅଗ୍ରସର ହେଲେ । ତାହା ହେଉଛି ତାଙ୍କ ନେତୃତ୍ୱରେ ଜୀବନର ପ୍ରଥମ ବିଦ୍ରୋହ । ୧୮୯୫ ମସିହା ଅଗଷ୍ଟ ୨୬ ତାରିଖରେ ବିର୍ସା ଗିରଫ ହୋଇ ଭାରତୀୟ ପିଙ୍ଗଳ କୋଡ଼ର ୫୦୫ ଧାରା ଅନୁଯାୟୀ ୨ ବର୍ଷ ସଶ୍ରମ କାରାଦଣ୍ଡରେ ଦଣ୍ଡିତ ହେଲେ ।

ଯେତେବେଳେ ଛୋଟନାଗପୁରର ମୁଣ୍ଡାମାନେ ଦୁର୍ଭିକ୍ଷ ଓ ମହାମାରୀ ଭିତରେ ପେଶି ହୋଇଯାଉଥିଲେ ସେସମୟରେ ମହାରାଣୀ ଭିକ୍ଟୋରିଆଙ୍କର ହୀରକ ଜୟନ୍ତୀ ଉତ୍ସବ ମହାସମାରୋହରେ ପାଳନ କରାଯାଉଥିଲା । ଏହି ଅବସରରେ ମହାରାଣୀ ସମସ୍ତ ରାଜନୈତିକ ବନ୍ଦୀମାନଙ୍କୁ ମୁକ୍ତ କରି ଦେବାଲାଗି ଆଦେଶ ଦେଇଥିଲେ, ତେଣୁ ୧୮୯୭ ମସିହାରେ ବିର୍ସା ଓ ତାଙ୍କର ୧୫ ଜଣ ଅନୁଗାମୀ ମଧ୍ୟ ହଜାରୀବାଗର ସେଣ୍ଟ୍ରାଲ ଜେଲରୁ ଦୁଇବର୍ଷ ପୂରିବା ପୂର୍ବରୁ ମୁକ୍ତ ହୋଇଥିଲେ ।

ବିର୍ସା ଏବଂ ଅନୁଗାମୀମାନେ ମୁକ୍ତ ହେବା ପରେ ଦୁର୍ଭିକ୍ଷ ଓ ମହାମାରୀରେ ପୀଡ଼ିତ ଲୋକମାନଙ୍କର ସେବାରେ ଲାଗି ପଡ଼ିଥିଲେ । ବିଶ୍ରାମ ଓ ସଂକ୍ରମଣକୁ ଖାତିର ନକରି ମାନବ ସେବା ହିଁ ତାଙ୍କ ଜୀବନର ଲକ୍ଷ୍ୟ ବୋଲି ଧରି ନେଇଥିଲେ । ଲୋକମାନଙ୍କ ମନରେ ଧାରଣା ଜନ୍ମିଲା ଯେ ବିର୍ସା ଯାହାଙ୍କୁ ଛୁଇଁ ଦେବେ ମୃତ୍ୟୁମୁଖରୁ ସେମାନେ ନିଶ୍ଚିତ ବଞ୍ଚିଯିବେ । ଏଣୁ ବିର୍ସାଙ୍କୁ ଲୋକମାନେ 'ଧର୍‌ତୀ ଆବା' ବୋଲି ସମ୍ବୋଧନ କଲେ ଏବଂ ଭଗବାନ ବୋଲି ପୂଜା ମଧ୍ୟ କଲେ ।

୧୮୯୭ ମସିହାରେ ବିର୍ସା ଜେଲରୁ ମୁକ୍ତ ହେଲାପରେ ପୁନର୍ବାର ମୁଣ୍ଡାମାନେ ତାଙ୍କ ନେତୃତ୍ୱରେ ଏକତ୍ରିତ ହେଲେ । ବିର୍ସା ଭିତରେ ଭିତରେ ତାଙ୍କର ଲୋକ ସଂପର୍କ ବୃଦ୍ଧି କରିବା ସଂଗେସଂଗେ ଆନ୍ଦୋଳନ ଚଳାଇ ରଖିଲେ । ତାଙ୍କ ଲୋକମାନଙ୍କର ପୂର୍ବ ଗୌରବ ଓ ଇତିହାସ ମନେ ପକାଇ ଦେବା ସହିତ ସେମାନଙ୍କୁ ଅଗ୍ନିବର୍ଷୀ ଭାଷଣ ମାଧ୍ୟମରେ ଦେଶପ୍ରେମରେ ଉଦ୍‌ବୁଦ୍ଧ କରିଥିଲେ । ଐତିହାସିକ ପୀଠ ଛୋଟନାଗପୁରର ଯେଉଁ ସ୍ଥାନଟି ତାଙ୍କର ପୂର୍ବପୁରୁଷଙ୍କ ସହ ସମ୍ବନ୍ଧିତ ଥିଲା ସେହି ସ୍ଥାନଟିର ମାଲିକ ସେମାନେ ବୋଲି ତାଙ୍କ ଅନୁଗାମୀମାନଙ୍କ ମନରେ ବିଶ୍ୱାସ ଜନ୍ମେଇ ଥିଲେ । ଇତ୍ୟବସରରେ ବିର୍ସା ଛୋଟନାଗପୁରର ଘଞ୍ଚ ଜଙ୍ଗଲ ମଧ୍ୟରେ ମୁଣ୍ଡାରାଜ ଆରମ୍ଭ କରି ଦେଇଥିଲେ । ୧୮୯୮ ମସିହା ଜାନୁଆରୀ ୫ ତାରିଖରେ ଏହି ଆନ୍ଦୋଳନକୁ ଦବେଇ ଦେବା ପାଇଁ ଏଡ୍‌କେଡିହକୁ ବ୍ରିଟିଶ ଫୌଜ ପଠାଯାଇଥିଲା । ଏହି ସମ୍ବାଦ ଆଗୁଆ ପାଇ ଯାଇ ବିର୍ସା ମୁଣ୍ଡାଙ୍କର ଡାହାଣ ହାତ

ଭାବରେ ପରିଗଣିତ ହେଉଥିବା ଗୟା ମୁଣ୍ଡାଙ୍କ ନେତୃତ୍ୱରେ ପ୍ରାୟ ୫୦୦ ଆନ୍ଦୋଳନକାରୀ ତନଗା ନଦୀକୂଳରେ ସେମାନଙ୍କୁ ପ୍ରତିରୋଧ କରି ପରାଜିତ କରିବାସହ ବହୁ ସୈନ୍ୟଙ୍କୁ ମାରି ଦେଇଥିଲେ ।

ଏତ୍‌କେଡ଼ିହର ଏଭଳି ଭୟାନକ ସମ୍ବାଦ ପାଇ ପୁଲିସ ଡେପୁଟୀ କମିଶନର ମିଃ ଷ୍ଟ୍ରିଟ ଫିଲ୍‌ଡ଼ ନିଜେ ୧୮୯୮ ମସିହା ଜାନୁଆରୀ ୬ ତାରିଖରେ ତାଙ୍କର ବିରାଟ ସୈନ୍ୟବାହିନୀ ଧରି ବିର୍ସା ଅନୁଗାମୀମାନଙ୍କୁ ବନ୍ଦୀ କରିବା ପାଇଁ ଯାଇଥିଲେ । ଯେତେବେଳେ ଗୟା ମୁଣ୍ଡା ଘରୁ ବାହାରିଲେ ନାହିଁ, ସେ ତାଙ୍କୁ ଘେରାଉ କରି ଦୁଇଜଣ ସୈନ୍ୟଙ୍କୁ ଘରେ ପ୍ରବେଶ ପାଇଁ ନିର୍ଦ୍ଦେଶ ଦେଲେ କିନ୍ତୁ ସେ ଦୁଇ ଜଣ ନିହତ ହେଲେ । ଏହାପରେ ଡେପୁଟୀ କମିଶନର ସୈନ୍ୟମାନଙ୍କୁ ଗୟା ମୁଣ୍ଡାଙ୍କ ଘରେ ନିଆଁ ଲଗାଇ ଦେବା ପାଇଁ ଆଦେଶ ଦେଲେ । ଗୟା ମୁଣ୍ଡା ତାଙ୍କର ସ୍ତ୍ରୀ ମନ୍‌କି ମୁଣ୍ଡା, ପୁତ୍ର ସୁନେରୀ ମୁଣ୍ଡା ଓ ଜଇମାସୀ ମୁଣ୍ଡା ବୀରତ୍ୱର ସହିତ ସଂଗ୍ରାମ କରି ଶେଷରେ ବନ୍ଦୀ ହେଲେ ।

୧୮୯୯ ଅଗଷ୍ଟ ୧୧ ତାରିଖ ଦିନ ବିର୍ସା ମୁଣ୍ଡା ଧନୁଶର ଧରି ଏବଂ ତାଙ୍କର ୪୦୦ ମୁଣ୍ଡା ଅନୁଗାମୀଙ୍କ ସହିତ ଖୁଣ୍ଟି ପୋଲିସ ଷ୍ଟେସନ ଉପରେ ଆକ୍ରମଣ କଲେ । ସେମାନେ ପୋଲିସ ଷ୍ଟେସନର ହେଡ଼ କନେଷ୍ଟବଳ ରଘୁନୀ ରାମ ସହିତ ଅନେକ ପୋଲିସଙ୍କୁ ହତ୍ୟା କଲେ । ସେହିବର୍ଷ ଡିସେମ୍ବର ୨୪ ତାରିଖ ଦିନ ହଜାର ହଜାର ମୁଣ୍ଡା ବିଭିନ୍ନ ସ୍ଥାନରେ ବ୍ରିଟିଶ କାର୍ଯ୍ୟାଳୟ ଉପରେ ଆକ୍ରମଣ କରିବା ସଂଗେ ସଂଗେ ରାଞ୍ଚି ଅଭିମୁଖେ ଯାତ୍ରା କଲେ କିନ୍ତୁ ସେମାନଙ୍କୁ ପ୍ରତିରୋଧ କରାଯାଇଥିଲା ।

୧୯୦୦ ମସିହା ଜାନୁଆରୀ ୮ ତାରିଖ ଦିନ ଡୋମ୍ବାରୀ ପାହାଡ଼ ଉପରେ ବିର୍ସା ମୁଣ୍ଡା ତାଙ୍କର ହଜାର ହଜାର ଅନୁଗାମୀମାନଙ୍କୁ ବ୍ରିଟିଶ ସାମ୍ରାଜ୍ୟ ବିରୁଦ୍ଧରେ ଲଢ଼େଇ ପାଇଁ ଆହ୍ୱାନ ଦେଉଥିବା ସମୟରେ ଡେପୁଟୀ ପୋଲିସ କମିଶନର ମିଃ ଷ୍ଟ୍ରିଟ୍ ଫିଲଡ଼ ତାଙ୍କର ସୈନ୍ୟମାନଙ୍କୁ ଉକ୍ତ ପାହାଡ଼ ଘେରାଉ କରିବା ପାଇଁ ନିର୍ଦ୍ଦେଶ ଦେଲେ । ଏହାପରେ ବିର୍ସା ମୁଣ୍ଡାଙ୍କୁ ସମର୍ପଣ କରିବା ପାଇଁ ସେ ମୁଣ୍ଡାମାନଙ୍କୁ ଆଦେଶ ଦେଇଥିଲେ । ବିର୍ସା ମୁଣ୍ଡାଙ୍କର ଅନୁଗାମୀ ନରସିଂହ ମୁଣ୍ଡା ଏକ ବୃହତ୍ ଶିଳାଖଣ୍ଡ ଉପରେ ଠିଆ ହୋଇ ବ୍ରିଟିଶ ସୈନ୍ୟ ଫେରିଯାଅ ଏବଂ ଛୋଟନାଗପୁର ପରିତ୍ୟାଗ କର ବୋଲି ସ୍ଲୋଗାନ ଦେଇଥିଲେ । ସଙ୍ଗେ ସଙ୍ଗେ ତାଙ୍କୁ ଗୁଳି କରି ମାରି ଦିଆଯାଇଥିଲା । ଏହାପରେ ପରେ ବ୍ରିଟିଶ ସୈନ୍ୟମାନେ ନିରୀହ ଜନତାଙ୍କ ଉପରେ ଗୁଳି ବର୍ଷଣ କରିବାକୁ ଲାଗିଲେ । ହଜାର ହଜାର ନିରୀହ ମୁଣ୍ଡା ମାତୃଭୂମି ପାଇଁ ପ୍ରାଣୋତ୍ସର୍ଗ କଲେ । ୧୯୦୦ ମସିହା ଜାନୁଆରୀ ୨୮ ତାରିଖରେ ଡୋନ୍‌କା ମୁଣ୍ଡା, ମାଝିଆ ମୁଣ୍ଡା ଏବଂ ଅନ୍ୟ ୩୨ ଜଣ ବିର୍ସାଙ୍କ ଅନୁଗାମୀ ବନ୍ଦୀ ହେଲେ ।

ବିର୍ସା ଏ ପର୍ଯ୍ୟନ୍ତ ଖସି ଯାଉଥିଲେ ମଧ ଶେଷରେ ଚକ୍ରଧରପୁର ଜଙ୍ଗଲରୁ ନିଦ୍ରିତ ଅବସ୍ଥାରେ ୧୯୦୦ ମସିହା ଫେବୃଆରୀ ୩ ତାରିଖରେ ଧରା ପଡ଼ିଲେ । ସେତେବେଳେ ତାଙ୍କୁ ହଜାରୀବାଗ ଜେଲକୁ ନିଆଗଲା । ହଜାର ହଜାର ଆଦିବାସୀ ତାଙ୍କର ଭଗବାନ ବିର୍ସା ମୁଣ୍ଡାଙ୍କ ଦୁର୍ଦ୍ଦିନରେ ମ୍ରିୟମାଣ ହୋଇପଡ଼ିଥିଲେ । ହଜାରିବାଗ ଜେଲରେ ତାଙ୍କର ସ୍ୱାସ୍ଥ୍ୟ ଖରାପ ଆଡ଼କୁ ଗତି କରିବାକୁ ଲାଗିଲା ଏବଂ ୧୯୦୦ ମସିହା ଜୁନ୍ ୫ ତାରିଖରେ ତାଙ୍କୁ ରାଞ୍ଚି ଜେଲକୁ ସ୍ଥାନାନ୍ତର କରାଯାଇଥିଲା । ଜୁନ୍ ୯ ତାରିଖ ସକାଳ ୯ଟା ସମୟରେ ବିର୍ସା ରକ୍ତ ବାନ୍ତି କରିବା ସହିତ ସଂଜ୍ଞାହୀନ ହୋଇପଡ଼ିଲେ ଏବଂ ଶେଷ ନିଃଶ୍ୱାସ ତ୍ୟାଗ କଲେ । ହଜାରିବାଗ ଓ ରାଞ୍ଚି ଜେଲରେ ହତୋତ୍ସାହିତ ମୁଣ୍ଡାମାନେ ସେଦିନ ଆମରଣ ଅନଶନ କଲେ ।

ବିର୍ସାଙ୍କ ମୃତ୍ୟୁ ପରେ ଗୟା ମୁଣ୍ଡା ଓ ତାଙ୍କ ପୁତ୍ର ସୋନରି ମୁଣ୍ଡା, ସୁଖରାମ ମୁଣ୍ଡା, ଡୋନ୍‌କା ମୁଣ୍ଡାଙ୍କୁ ମୃତ୍ୟୁଦଣ୍ଡରେ ଦଣ୍ଡିତ କରାଗଲା । ମାଝିଆ ମୁଣ୍ଡା ଏବଂ ଅନ୍ୟମାନଙ୍କୁ ଦୁଇ ବର୍ଷ ସଶ୍ରମ କାରାଦଣ୍ଡ ଦିଆଗଲା । ଗୟା ମୁଣ୍ଡାଙ୍କର ଅନ୍ୟ ଏକ ପୁତ୍ର ଜୟମାସି ମୁଣ୍ଡାଙ୍କୁ ଆଜୀବନ କାରାଦଣ୍ଡରେ ଦଣ୍ଡିତ କରାଯାଇଥିଲା ।

ବିର୍ସା ମୁଣ୍ଡା ମାତ୍ର ୨୫ ବର୍ଷ ବୟସରେ ଶହୀଦ ହୋଇଥିଲେ । ସେ ହେଉଛନ୍ତି ଜଣେ ମହାନ୍ ସ୍ୱାଧୀନତା ସଂଗ୍ରାମୀ । ବିର୍ସାଙ୍କ ସହ ହାତ ମିଳାଇ ଦେଶ ପାଇଁ ହଜାର ହଜାର ସଂଖ୍ୟକ ସଂଗ୍ରାମୀ ମୃତ୍ୟୁବରଣ କରିଥିଲେ । ଆଜି ବିର୍ସାଙ୍କୁ 'ଧରତୀ ଆବା' ଆଖ୍ୟା ଦିଆଯାଇ ସମ୍ମାନ କରାଯାଉଛି ଏବଂ ସେ 'ବିର୍ସା ଭଗବାନ' ଭାବେ ଓଡ଼ିଶା ଏବଂ ବିଭିନ୍ନ ରାଜ୍ୟରେ ଆଦିବାସୀ ସଂପ୍ରଦାୟଙ୍କ ମଧ୍ୟରେ ପୂଜା ପାଉଛନ୍ତି । ଆମେ ଭାରତୀୟମାନେ ଗର୍ବିତ ଯେ ଆମ ମାତୃଭୂମିରେ ଏପରି ଜଣେ ତେଜସ୍ୱୀ ବୀର ସନ୍ତାନ ଭୂମିଷ୍ଠ ହୋଇଥିଲେ ।

ଗୋଡି ତଥା କ୍ରୀତଦାସ ପ୍ରଥା ବିରୁଦ୍ଧରେ ଜଣେ ଯୋଦ୍ଧା ଭାବେ ଅଦମ୍ୟ ସାହସ ଓ ପ୍ରଶଂସନୀୟ ଉତ୍ସାହର ମୂର୍ତ୍ତିମନ୍ତ ପ୍ରତୀକ ଭାବେ ବିର୍ସା ଗଣା ହୁଅନ୍ତି । ଆଜି ସେ ଆଦିବାସୀମାନଙ୍କ ନିମନ୍ତେ ଗୌରବମୟ ପରିଚିତି ଓ ଭବିଷ୍ୟତ ପିଢ଼ିଙ୍କ ନିମନ୍ତେ ଆଲୋକବର୍ତ୍ତିକା ।

❖ ❖ ❖

# ଉତ୍କଳ କେଶରୀ
# ଡକ୍ଟର ହରେକୃଷ୍ଣ ମହତାବ



ନବ ଉତ୍କଳର ନିର୍ମାତା ଉତ୍କଳ କେଶରୀ ଡଃ ହରେକୃଷ୍ଣ ମହତାବଙ୍କ ସଂଗ୍ରାମମୟ ବୈପ୍ଳବିକ ଭୂମିକା ଓଡ଼ିଶା ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ । ତାଙ୍କର ବଳିଷ୍ଠ ନେତୃତ୍ୱ ଓ ତ୍ୟାଗପୂତ ଜୀବନ ଓଡ଼ିଶାକୁ ବ୍ରିଟିଶ ଶାସନରୁ ମୁକ୍ତ କରି ଜନମାନସରେ ଏକ ନୂତନ କ୍ରାନ୍ତି ଆଣି ଦେଇଥିଲା । ଓଡ଼ିଶାର ମାଟି, ପାଣି, ପବନ ସହ ଓତପ୍ରୋତ ଭାବେ ଜଡ଼ିତ ମହତାବ ସାରା ରାଜ୍ୟରେ ଏକ ସଚେତନ ବାତାବରଣ ସୃଷ୍ଟି କରିଥିଲେ । ମହାତ୍ମା ଗାନ୍ଧୀଙ୍କର ଆଦର୍ଶରେ ଅନୁପ୍ରାଣିତ ହୋଇ ଅର୍ଦ୍ଧଶତାବ୍ଦୀରୁ ଊର୍ଦ୍ଧ୍ୱକାଳ ଓଡ଼ିଶା ଓ ଭାରତବର୍ଷର ରାଜନୀତିକୁ ସେ ଆଚ୍ଛନ୍ନ କରି ରଖିଥିଲେ । ସ୍ୱାଧୀନତା ସଂଗ୍ରାମ ବ୍ୟତୀତ ସାହିତ୍ୟ ଓ ସଂସ୍କୃତିର ଅଗ୍ରଗତି ପାଇଁ ତାଙ୍କର ଅବଦାନ ଅତୁଳନୀୟ । ସେ ସୁପ୍ତ ଓଡ଼ିଆ ଜାତିର ପ୍ରାଣରେ ଅପୂର୍ବ ଜାଗରଣ ସୃଷ୍ଟି କରିଥିଲେ । ଛାତ୍ର ଜୀବନରୁ ତାଙ୍କ ଭାବନାରେ ପ୍ରତିବାଦ ଓ ପୁନର୍ଗଠନର ମହାମନ୍ତ୍ର ଉଜ୍ଜୀବିତ ହୋଇଥିଲା । ବିଂଶ ଶତାବ୍ଦୀର ଚିନ୍ତାନାୟକ ଓ ଅବିସ୍ମରଣୀୟ ନେତା ଥିଲେ ମହତାବ । ବାସ୍ତବରେ ସେ ଥିଲେ ସାଂସ୍କୃତିକ ଓ ରାଜନୈତିକ ଇତିହାସର ପ୍ରଜ୍ଞାପୁରୁଷ ଏବଂ ନିଜକୁ ସେ ଏକ ବିରାଟ ଅନୁଷ୍ଠାନରେ ପରିଣତ କରିପାରିଥିଲେ । ସ୍ୱାଧୀନ ଭାରତର ଏକତା ଓ ସଂହତି ପ୍ରତିଷ୍ଠା ଦିଗରେ ହରେକୃଷ୍ଣ ମହତାବଙ୍କ ପ୍ରଚେଷ୍ଟା ଅନନ୍ୟ । ଉତ୍କଳ ପ୍ରଦେଶର ପ୍ରାଣ ପ୍ରତିଷ୍ଠାତା ମଧୁବାବୁଙ୍କ ପରି ସେ ଥିଲେ ବୃହତ୍ତର ଓଡ଼ିଶା ପ୍ରଦେଶର ନିର୍ମାତା । ତାଙ୍କର ଶୃଙ୍ଖଳିତ ଜୀବନ, ନିଷ୍ଠା, ତ୍ୟାଗ, ଧୈର୍ଯ୍ୟ ଓ ଆତ୍ମବିଶ୍ୱାସ ତାଙ୍କୁ ମହତ ପଦବାଚ୍ୟ କରାଇଛି । ତାଙ୍କର ସଂଗ୍ରାମୀ ମନୋଭାବ ଆଜିର ଯୁବ ସମାଜକୁ ଚିରଦିନ ପ୍ରେରଣା ଯୋଗାଇବ ।

ଡକ୍ଟର ହରେକୃଷ୍ଣ ମହତାବ ୧୮୯୯ ମସିହା ନଭେମ୍ବର ୨୧ ତାରିଖ ଦିନ ଅବିଭକ୍ତ ବାଲେଶ୍ୱର ଜିଲ୍ଲାର ଅଗରପଡ଼ାଠାରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ କୃଷ୍ଣଚନ୍ଦ୍ର ଦାସ ଏବଂ ମାତାଙ୍କ ନାମ ତୋହଫା ବିବି, ଯିଏ କି ଥିଲେ ସ୍ୱର୍ଗତଃ ଜଗନ୍ନାଥ ମହତାବଙ୍କ କନ୍ୟା । ଜଗନ୍ନାଥ ମହତାବଙ୍କ କୌଣସି ପୁତ୍ର ସନ୍ତାନ ନଥିଲା,

ଏଣୁ ଡକ୍ଟର ହରେକୃଷ୍ଣ ମହତାବଙ୍କୁ ପୌଷ୍ୟପୁତ୍ରଭାବେ ଗ୍ରହଣ କରିଥିଲେ । ଡକ୍ଟର ହରେକୃଷ୍ଣ ମହତାବଙ୍କ ବାଲ୍ୟଶିକ୍ଷା ଗ୍ରାମ ଚାଟଶାଳୀ ତଥା ସ୍କୁଲରେ ଆରମ୍ଭ ହୋଇଥିଲା ଏବଂ ଗାଁ ସ୍କୁଲରେ ପାଠ ଶେଷ କରି ସେ ଭଦ୍ରକ ହାଇସ୍କୁଲରେ ଅଧ୍ୟୟନ କରିଥିଲେ । ମାଟ୍ରିକ୍ୟୁଲେସନ୍ ଅଧ୍ୟୟନ କରୁଥିବା ସମୟରେ ୧୯୧୭ ମସିହାରେ ତାଙ୍କର ସୁଭଦ୍ରା ମହତାବଙ୍କ ସହ ବିବାହ ହୋଇଥିଲା ।

ସେ କଟକ ରେଭେନ୍ସା କଲେଜରେ ଅଧ୍ୟୟନ କରୁଥିବା ସମୟରେ ତାଙ୍କର ସହପାଠୀ ନବକୃଷ୍ଣ ଚୌଧୁରୀଙ୍କ ସହିତ ରାଜନୀତି ବିଷୟରେ ଆଲୋଚନା କରୁଥିଲେ । ୧୯୧୮ ମସିହାରେ କଟକରେ ହୋଇଥିବା ଉତ୍କଳ ସମ୍ମିଳନୀରେ ସେ ସ୍ୱେଚ୍ଛାସେବକରୂପେ ଯୋଗ ଦେଇଥିଲେ । ୧୯୨୦ ମସିହା ସେପ୍ଟେମ୍ବର ମାସରେ ମହାତ୍ମା ଗାନ୍ଧୀଙ୍କ ସହିତ ଆଲୋଚନା କରିବା ପାଇଁ କଲିକତାରେ ଯେଉଁ କଂଗ୍ରେସ ଅଧିବେଶନ ହୋଇଥିଲା ସେଥିରେ ସେ ଦର୍ଶକଭାବେ ଯୋଗ ଦେଇଥିଲେ । ୧୯୨୦ ମସିହାରେ କଲେଜରେ ପଢୁଥିବା ସମୟରେ ମହାତ୍ମା ଗାନ୍ଧୀଙ୍କ ଆହ୍ୱାନକ୍ରମେ ସେ ପାଠପଢ଼ା ଛାଡ଼ି କଂଗ୍ରେସ ଆନ୍ଦୋଳନରେ ଯୋଗ ଦେଲେ ।

୧୯୨୧ ମସିହାରେ ବି.ଏ. ଫାଇନାଲ ପରୀକ୍ଷା ଦେବା ପୂର୍ବରୁ ସହପାଠୀଙ୍କ ସହ କଲେଜ ତ୍ୟାଗ କରି ଅସହଯୋଗ ଆନ୍ଦୋଳନରେ ଝାସ ଦେଇଥିଲେ ଏବଂ ବାଲେଶ୍ୱର ଜିଲ୍ଲା କଂଗ୍ରେସ କମିଟିର ସଂପାଦକ ଭାବେ କାର୍ଯ୍ୟଭାର ଗ୍ରହଣ କରିଥିଲେ । ୧୯୨୨ ମସିହା ଜୁଲାଇ ମାସରେ କନିକା ପ୍ରଜା ଆନ୍ଦୋଳନର ନେତୃତ୍ୱ ନେଇ ଏକ ବର୍ଷ ସଶ୍ରମ କାରାଦଣ୍ଡ ଭୋଗୁଥିବା ବେଳେ ଜେଲ୍‌ରେ 'ଅଜବ ଦୁନିଆଁ' ଉପନ୍ୟାସ ଓ ଇଂରାଜୀରେ 'ଫ୍ରି ଥିଙ୍କିଙ୍ଗ୍' (Free Thinking) ପୁସ୍ତକ ରଚନା, ୧୯୨୩ ମସିହାରେ ଜେଲ୍‌ରୁ ମୁକ୍ତ ଏବଂ ସେହିବର୍ଷ ଅକ୍ଟୋବର ୨ରେ କଟକ ମୁକୁର ପ୍ରେସ୍‌ରୁ ସାପ୍ତାହିକ 'ପ୍ରଜାତନ୍ତ୍ର' ପ୍ରକାଶ, ୧୯୨୪ରୁ ୧୯୨୯ ମସିହା ପର୍ଯ୍ୟନ୍ତ ବାଲେଶ୍ୱର ଜିଲ୍ଲାବୋର୍ଡ଼ର ସଭାପତି, ୧୯୨୫ରେ ସ୍ୱରାଜ୍ୟ ଆଶ୍ରମରେ ହ୍ୟାଣ୍ଡ୍‌ପ୍ରେସ ସ୍ଥାପନ ଓ 'ସ୍ୱରାଜ୍ୟ ସମାଚାର' ସାପ୍ତାହିକ ପତ୍ରିକା ପ୍ରକାଶ, ୧୯୨୭ ମସିହାରେ ସାପ୍ତାହିକ ଇଂରାଜୀ ପତ୍ରିକା 'ଆଡ଼ଭେଞ୍ଚର୍' ପ୍ରକାଶ, ୧୯୨୮ରେ କଲିକତାରେ ଓଡ଼ିଆ ସମାଜ ପ୍ରତିଷ୍ଠା ଓ ସଭାପତି ପଦ ଗ୍ରହଣ, ୧୯୨୯ ମସିହାରେ କଲିକତାରେ ସାଇମନ କମିଶନ ବିରୋଧରେ ପ୍ରବାସୀ ଓଡ଼ିଆଙ୍କ ବିକ୍ଷୋଭର ନେତୃତ୍ୱ, ୧୯୩୦ ମସିହାରେ ଉତ୍କଳ ପ୍ରଦେଶ କଂଗ୍ରେସ କମିଟି ସଭାପତିଭାବେ ନିର୍ବାଚିତ, ଇଞ୍ଚୁଡ଼ି ଲବଣ ସତ୍ୟାଗ୍ରହରେ ଗିରଫ ହୋଇ ୧୮ ମାସ ଜେଲବରଣ ଏବଂ 'ସ୍ୱରାଜ୍ୟ ସାଧନ' ଓ 'ଦଶ ବର୍ଷର ଓଡ଼ିଶା' ପୁସ୍ତକ ରଚନା, ୧୯୩୧ ଗାନ୍ଧୀ–ଇରଉଇନ୍ ଚୁକ୍ତି ଅନୁସାରେ କାରାମୁକ୍ତ, ୧୯୩୨ରେ ପୁରୀରେ କଂଗ୍ରେସ ଅଧିବେଶନ ବେଆଇନ ଘୋଷିତ ହେବାରୁ ସେ ବାଲେଶ୍ୱରରେ ଗିରଫ ହୋଇଥିଲେ । ଛଅ ମାସ ଜେଲ୍‌ରେ ରହି 'ନୂତନ ଧର୍ମ' ଉପନ୍ୟାସ ରଚନା କରିଥିଲେ । ନିଖିଳ ଭାରତ କଂଗ୍ରେସ କମିଟି କାର୍ଯ୍ୟାଳୟକୁ ଗୋପନପତ୍ର ପ୍ରେରଣ ଅଭିଯୋଗରେ ପୁନର୍ବାର ହଜାରିବାଗ ଜେଲ୍‌ରେ ସହଧର୍ମିଣୀ ସୁଭଦ୍ରାଙ୍କ ସହିତ ବନ୍ଦୀ ହେଲେ ।

୧୯୩୪ ମସିହାରେ ଗାନ୍ଧୀଙ୍କ ସହିତ ପୁରୀରୁ ଭଦ୍ରକ ପର୍ଯ୍ୟନ୍ତ ପଦଯାତ୍ରା, ୧୯୩୭ରେ ଓଡ଼ିଶା ପ୍ରଦେଶ କଂଗ୍ରେସ ସଭାପତିଭାବେ ନିର୍ବାଚିତ, ଗଡ଼ଜାତ ଅନୁସନ୍ଧାନ କମିଟିର ଅଧକ୍ଷ, ୧୯୩୮ରେ ଗଡ଼ଜାତ ପ୍ରଜା ଆନ୍ଦୋଳନର ନେତୃତ୍ୱ ନେଇ ପ୍ରଜାମଣ୍ଡଳର ପରାମର୍ଶଦାତା ଏବଂ ନିଖିଳ ଭାରତ କଂଗ୍ରେସ କାର୍ଯ୍ୟକାରୀ କମିଟି ସଦସ୍ୟ ରୂପେ ମନୋନୀତ ହୋଇଥିଲେ । ୧୯୩୯ ମସିହା ଜାନୁଆରୀ ୫ ତାରିଖରେ ରଣପୁର ପ୍ରଜା ଆନ୍ଦୋଳନର ବେଜେଲଗେଟ

ହତ୍ୟା ମାମଲାରେ ଜଡ଼ିତ ହୋଇ ଗାନ୍ଧିଜୀଙ୍କ ଉଦ୍ୟମରେ ମୁକ୍ତ, ୧୯୪୦ ମସିହା ଡ଼ିସେମ୍ବର ମାସରେ ବ୍ୟକ୍ତିଗତ ସତ୍ୟାଗ୍ରହ ଓ ରେମୁଣା ସଭାରେ ଭାଷଣ ଦେବା ବେଳେ ଗିରଫ ହୋଇ ବ୍ରହ୍ମପୁର ଜେଲ୍‌ରେ ଏକ ବର୍ଷ ବନ୍ଦୀ, ୧୯୪୧ ଡ଼ିସେମ୍ବର ମାସରେ ଜେଲରୁ ମୁକ୍ତ ହେଲା ପରେ 'ରଚନା' ନାମରେ ସାପ୍ତାହିକ ପତ୍ରିକା ସମ୍ପାଦନା, ୧୯୪୨ ଅଗଷ୍ଟ ମାସରେ 'ଭାରତଛାଡ଼' ପ୍ରସ୍ତାବ ଗୃହୀତ ହେବା ଦିନ ବମ୍ବେଠାରେ ଗିରଫ, ୧୯୪୫ରେ ଅହମ୍ମଦ ନଗର ଫୋର୍ଟ ଜେଲରେ ନେହରୁ, ପଟେଲ, କୃପାଳିନୀ ପ୍ରମୁଖଙ୍କ ସହ ବନ୍ଦୀ ଏବଂ ଜେଲ୍‌ରେ 'ଓଡ଼ିଶା ଇତିହାସ', ତିନୋଟି କାବ୍ୟ ଓ ତିନୋଟି ଉପନ୍ୟାସ ରଚନା । ଡଃ ମହତାବ ୧୯୪୫ ମସିହା ମେ' ମାସରେ ଅହମ୍ମଦ ନଗର ଫୋର୍ଟ ଜେଲ୍‌ରୁ ସମ୍ବଲପୁର ଜେଲ୍‌କୁ ସ୍ଥାନାନ୍ତରିତ ହେଲେ । ସେଠାରୁ ମୁକ୍ତ ହୋଇ କଟକରେ କଂଗ୍ରେସ ସେବା ଦଳ ଗଠନ, ୧୯୪୬ ମସିହା ଏପ୍ରିଲ୍ ୨୩ରୁ ୧୯୫୦ ମେ' ୧୧ ତାରିଖ ପର୍ଯ୍ୟନ୍ତ ଓଡ଼ିଶାର ପ୍ରଧାନମନ୍ତ୍ରୀ (ଭାରତର ସମ୍ବିଧାନ ପ୍ରଣୀତ ହେବା ପର୍ଯ୍ୟନ୍ତ ମୁଖ୍ୟମନ୍ତ୍ରୀ ପଦବୀଟି ପ୍ରଧାନମନ୍ତ୍ରୀ ପଦ ଭାବରେ ନାମିତ ଥିଲା), ସେପ୍ଟେମ୍ବର ୩୦ରେ ଭୁବନେଶ୍ୱରରେ ରାଜଧାନୀ ନିର୍ମାଣ ପାଇଁ ବ୍ୟବସ୍ଥାପକ ସଭାରେ ପ୍ରସ୍ତାବ ଅନୁମୋଦିତ, ମାନ୍ଦ୍ରାଜ ସରକାରଙ୍କ ସହିତ ମାଛକୁଣ୍ଡର ଡୁଡୁମା ଜଳ ବିଦ୍ୟୁତ୍ କେନ୍ଦ୍ର ପାଇଁ ଚୁକ୍ତି, ଓଡ଼ିଶା ଅଲମ୍ପିକ ଆସୋସିଏସନ୍ ଗଠନ, ବିଦ୍ୟାଧରପୁରରେ ଧାନ ଗବେଷଣା କେନ୍ଦ୍ରର ଭିତ୍ତିପ୍ରସ୍ତର ସ୍ଥାପନ, ୧୯୪୭ ମସିହା ଅଗଷ୍ଟ ୮ରେ କଟକ ଦୈନିକ 'ପ୍ରଜାତନ୍ତ୍ର'ର ପୁନଃପ୍ରକାଶ, ପ୍ରଜାତନ୍ତ୍ରରେ 'ଗାଁ ମଜଲିସ' ଶୀର୍ଷକ ସ୍ତମ୍ଭ ମାଧ୍ୟମରେ ଧାରାବାହିକ ଭାବେ ଗ୍ରାମାଞ୍ଚଳର ଅଭାବ ଅସୁବିଧା ସଂପର୍କରେ ପ୍ରକାଶନ, ନଭେମ୍ବର ମାସରେ ହୀରାକୁଦ ବନ୍ଧ ଯୋଜନା ପାଇଁ କେନ୍ଦ୍ର ସରକାରଙ୍କ ସହ ରାଜ୍ୟ ସରକାରଙ୍କ ଚୁକ୍ତି, ନଭେମ୍ବର ୧୪ରେ ନୀଳଗିରି ରାଜ୍ୟର ଶାସନ ଦାୟିତ୍ୱ ଗ୍ରହଣ ଏବଂ ଡିସେମ୍ବର ୧୪ରେ ଗଡ଼ଜାତ ମିଶ୍ରଣର ଚୁକ୍ତିପତ୍ର ସର୍ଦ୍ଦାର ପଟେଲଙ୍କ ଉପସ୍ଥିତିରେ ୨୫ଟି ଦେଶୀୟ ରାଜ୍ୟର ରାଜାମାନଙ୍କ ସହିତ ସ୍ୱାକ୍ଷରିତ, ୧୯୪୮ ଜାନୁଆରୀ ୧ରେ ମୟୂରଭଞ୍ଜ ବ୍ୟତୀତ ଓଡ଼ିଶା ସହିତ ସମସ୍ତ ଗଡ଼ଜାତ ମିଶ୍ରଣ, ଜାନୁଆରୀ ୨୮ରେ କଟକର ମଧୁପୁର କୋଠିଠାରେ ଆକାଶବାଣୀ କେନ୍ଦ୍ର ପ୍ରତିଷ୍ଠା, ଏପ୍ରିଲ୍ ୧୨ରେ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହରୁଙ୍କ ଦ୍ୱାରା ହୀରାକୁଦ ବନ୍ଧର ଶୁଭଦାନ, ଏପ୍ରିଲ୍ ୧୩ରେ ପ୍ରଧାନମନ୍ତ୍ରୀ ନେହରୁଙ୍କ ଦ୍ୱାରା ନୂଆ ରାଜଧାନୀର ଭିତ୍ତିପ୍ରସ୍ତର ସ୍ଥାପନ, ଜୁଲାଇ ୨୬ ତାରିଖରେ ଓଡ଼ିଶା ହାଇକୋର୍ଟ ପ୍ରତିଷ୍ଠା, ନଭେମ୍ବର ୯ରେ ଭାରତ ସରକାରଙ୍କ ଦ୍ୱାରା ମୟୂରଭଞ୍ଜ ରାଜ୍ୟର ଶାସନଭାର ଗ୍ରହଣ, ୧୯୪୯ରେ 'ଝଙ୍କାର' ଓ ଇଂରାଜୀ ଦୈନିକ 'ଇଷ୍ଟର୍ଣ୍ଣ ଟାଇମସ୍' ପ୍ରକାଶିତ । ୧୯୫୦ ଏପ୍ରିଲ୍ ୧୩ରେ ବିଷୁବ ମିଳନର ଶୁଭାରମ୍ଭ ଏବଂ ମେ' ୧୩ରୁ ୧୯୫୨ ମେ' ୧୫ ତାରିଖ ପର୍ଯ୍ୟନ୍ତ କେନ୍ଦ୍ରରେ ବାଣିଜ୍ୟ ମନ୍ତ୍ରୀ ଭାବରେ ଅବସ୍ଥାପିତ, ଆନ୍ଧ୍ର ବିଶ୍ୱବିଦ୍ୟାଳୟରୁ 'ଓଡ଼ିଶା ଇତିହାସ' ଲେଖକ ଭାବରେ ପି.ଏଚ୍.ଡ଼ି. ଉପାଧିରେ ସମ୍ମାନିତ, ୧୯୫୧ରେ ସ୍ୱାଧୀନ ଭାରତର ପ୍ରଥମ ସାଧାରଣ ନିର୍ବାଚନରେ କଟକ ଲୋକସଭା ନିର୍ବାଚନ ମଣ୍ଡଳୀରୁ ପାର୍ଲାମେଣ୍ଟକୁ ନିର୍ବାଚିତ, ୧୯୫୪ ମସିହା ପର୍ଯ୍ୟନ୍ତ କଂଗ୍ରେସ ପାର୍ଲାମେଣ୍ଟାରୀ ଦଳର ସେକ୍ରେଟେରୀଭାବେ ଦାୟିତ୍ୱ ଗ୍ରହଣ, ୧୯୫୫ ମାର୍ଚ୍ଚ ୨ରୁ ୧୯୫୬ ଅକ୍ଟୋବର ୧ ତାରିଖ ପର୍ଯ୍ୟନ୍ତ ଅବିଭକ୍ତ ବମ୍ବେର ରାଜ୍ୟପାଳଭାବେ ନିଯୁକ୍ତ, ଅକ୍ଟୋବର ୧୯ରୁ ୧୯୬୧ ଫେବୃୟାରୀ ୨୪ ତାରିଖ ପର୍ଯ୍ୟନ୍ତ ଓଡ଼ିଶାର ମୁଖ୍ୟମନ୍ତ୍ରୀଭାବେ ଅବସ୍ଥାପିତ ଥିବାବେଳେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ୍ ଉପାଧିରେ ସମ୍ମାନିତ, ୧୯୫୭ ଜାନୁଆରୀ ୧୩ ତାରିଖରେ ପ୍ରଧାନମନ୍ତ୍ରୀ ନେହରୁଙ୍କ ଦ୍ୱାରା ହୀରାକୁଦ ବନ୍ଧ ଉଦ୍‌ଘାଟିତ, ମେ' ୧୯ ପାରାଦ୍ୱୀପଠାରେ ବନ୍ଦର ନିର୍ମାଣପାଇଁ ଘୋଷଣା, ଭୁବନେଶ୍ୱରରେ ରାଜ୍ୟ ସଂଗ୍ରହାଳୟର ଶିଳାନ୍ୟାସ, ୧୯୫୮ ଜାନୁଆରୀ ୧ରେ ରାଷ୍ଟ୍ରପତି ଡକ୍ଟର ରାଜେନ୍ଦ୍ର ପ୍ରସାଦଙ୍କ ଦ୍ୱାରା ଭୁବନେଶ୍ୱରରେ ଉତ୍କଳ ବିଶ୍ୱବିଦ୍ୟାଳୟର

ଭିତ୍ତିପ୍ରସ୍ତର ସ୍ଥାପନ, ଅଗଷ୍ଟ ୧୫ରେ ଭୁବନେଶ୍ୱର କଳାବିକାଶ କେନ୍ଦ୍ରର ଶିଳାନ୍ୟାସ ଏବଂ ସାଗର ବିଶ୍ୱବିଦ୍ୟାଳୟରୁ ପି.ଏଚ୍.ଡ଼ି. ଉପାଧିରେ ସମ୍ମାନିତ, ଲଳିତ କଳା ଏକାଡ଼େମୀ ଏବଂ କଳାମଣ୍ଡପ ପ୍ରତିଷ୍ଠା, ମେ' ୨୨ରେ କଂଗ୍ରେସ–ଗଣତନ୍ତ୍ର ପରିଷଦ ମନ୍ତ୍ରିମଣ୍ଡଳର ମୁଖ୍ୟମନ୍ତ୍ରୀଭାବେ ଦାୟିତ୍ୱ ଗ୍ରହଣ, ୧୯୬୦ରେ ରାଜ୍ୟ ସଂଗ୍ରହାଳୟ କେନ୍ଦ୍ର ସ୍ୱରାଷ୍ଟ୍ର ମନ୍ତ୍ରୀ ପଣ୍ଡିତ ଗୋବିନ୍ଦ ବଲ୍ଲଭ ପନ୍ଥଙ୍କ ଦ୍ୱାରା ଉଦ୍‌ଘାଟିତ ।

ତାଙ୍କ ସମୟରେ ବିଧାନସଭାରେ ଭୂସଂସ୍କାର ବିଲ୍ ଗୃହୀତ, ରାଉରକେଲା ଇସ୍ପାତ୍ କାରଖାନା କାର୍ଯ୍ୟ ପୂର୍ଣ୍ଣାଙ୍ଗ । ୧୯୬୨ରୁ ୬୭ ମସିହା ପର୍ଯ୍ୟନ୍ତ ଅନୁଗୁଳ ଲୋକସଭା ନିର୍ବାଚନ ମଣ୍ଡଳୀରୁ ଲୋକସଭାକୁ ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ, କଂଗ୍ରେସ ପାର୍ଲାମେଣ୍ଟାରୀ ଦଳର ଉପଦଳପତିଭାବେ ମନୋନୀତ, ୧୯୬୭ରେ ଭୁବନେଶ୍ୱର ଓ ବାସୁଦେବପୁର ଉଭୟ ନିର୍ବାଚନ ମଣ୍ଡଳୀରୁ ବିଧାନସଭାକୁ ନିର୍ବାଚିତ ଓ ଜନକଂଗ୍ରେସ ଦଳ ଗଠନ, ୧୯୭୧ରେ ଇନ୍ଦିରା ଅନୁଗାମୀ କଂଗ୍ରେସ (J) ପକ୍ଷରୁ ଓଡ଼ିଶା ବିଧାନସଭାକୁ ନିର୍ବାଚିତ, ୧୯୭୪ରୁ ୧୯୭୭ ପର୍ଯ୍ୟନ୍ତ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନରେ ଭୁବନେଶ୍ୱର ନିର୍ବାଚନ ମଣ୍ଡଳୀରୁ ଉତ୍କଳ କଂଗ୍ରେସ ଦଳ ପକ୍ଷରୁ ବିଧାନସଭାକୁ ନିର୍ବାଚିତ, ୧୯୭୫ରେ ଜରୁରିକାଳୀନ ପରିସ୍ଥିତିରେ ଗିରଫ ହୋଇ ୧୮ ମାସ କାଳ ଫୁଲବାଣୀ ଓ ଭଞ୍ଜନଗର ଜେଲ୍‌ରେ ସାଧାରଣ ବନ୍ଦୀ ଭାବରେ ଜୀବନ ବିତାଇଥିଲେ । ୧୯୭୬ ମାର୍ଚ୍ଚ ୨୬ରୁ ଏପ୍ରିଲ୍ ୨୫ ତାରିଖ ପର୍ଯ୍ୟନ୍ତ ପାରୋଲ୍‌ରେ ମୁକ୍ତ, ୧୯୭୭ରେ ସକ୍ରିୟ ରାଜନୀତିରୁ ଅବସର ଗ୍ରହଣ । ୧୯୭୮ ମସିହାରେ ତାଙ୍କ ସହଧର୍ମିଣୀ ସୁଭଦ୍ରା ମହତାବଙ୍କ ପରଲୋକ, ୧୯୮୧ ଏପ୍ରିଲ୍ ୧୬ରେ ସମ୍ବଲପୁରରୁ ଦୈନିକ 'ହୀରାଖଣ୍ଡ'ର ପ୍ରକାଶ ଏବଂ ୧୯୮୩ ମସିହାରେ 'ଗାଁ ମଜଲିସ୍' ପାଇଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ଲାଭ, ୧୯୮୬ ମସିହାରେ ଦିଲ୍ଲୀଠାରେ ''While Serving my Nation : Recollections of a Congress Man'' ପୁସ୍ତକ ଉନ୍ମୋଚିତ ହୋଇଥିଲା ।

୧୯୮୭ ମସିହା ଜାନୁଆରୀ ୨ ତାରିଖରେ ୮୮ ବର୍ଷ ବୟସରେ ଡଃ ମହତାବଙ୍କ କର୍ମମୟ ଜୀବନର ଅବସାନ ଘଟିଲା । ଓଡ଼ିଶାର ଅର୍ଦ୍ଧଶତାବ୍ଦୀର ରାଜନୈତିକ, ଅର୍ଥନୈତିକ, ସାଂସ୍କୃତିକ ଓ ସାମାଜିକ ବିକାଶର ମୂର୍ତ୍ତିମନ୍ତ ପ୍ରତୀକ ଥିଲେ ଡଃ ମହତାବ । ତାଙ୍କର ଜୀବନ ଥିଲା ଦେଶ ପାଇଁ, ଜାତି ପାଇଁ ଏକ ସମର୍ପିତ ଜୀବନ । ସେ ଥିଲେ ଲକ୍ଷ ଲକ୍ଷ ଦେଶ ଭକ୍ତ, ସମାଜ ସେବକଙ୍କ ଶକ୍ତି ଓ ପ୍ରେରଣାର ଉତ୍ସ । ତାଙ୍କ ବିୟୋଗରେ ଦେଶ ଜଣେ ମହାନ୍ ସ୍ୱାଧୀନତା ସଂଗ୍ରାମୀ, ଗାନ୍ଧୀ ଚିନ୍ତାଧାରାର ପ୍ରବକ୍ତା, ବିଚକ୍ଷଣ ରାଜନୀତିଜ୍ଞ, ଯଶସ୍ୱୀ ସାହିତ୍ୟିକ, ନିର୍ଭୀକ ସାମ୍ବାଦିକ, ମାନବତାର ପୂଜାରୀଙ୍କୁ ହରାଇଛି । ସେ କେବଳ ସ୍ୱାଧୀନତା ସଂଗ୍ରାମର ସାରଥି ଭାବରେ ନୁହେଁ, ଓଡ଼ିଶାର ନବଯୁଗର ପ୍ରବର୍ତ୍ତକ ଓ ଲୋକ ଶାସନର ସୂତ୍ରଧର ରୂପେ ଯୁଗ ଯୁଗ ଧରି ଜନମାନସରେ ବଞ୍ଚି ରହିଥିବେ ।

❖ ❖ ❖

# ଜିଲ୍ଲା ସ୍ତରରେ ଥିବା ଉତ୍କଳ ପ୍ରସଙ୍ଗ ଏବଂ ଓଡ଼ିଶା ରିଭ୍ୟୁ ପୁସ୍ତକର ବିକ୍ରୟ କେନ୍ଦ୍ର

| କ୍ରମିକ ସଂଖ୍ୟା | ଜିଲ୍ଲାର ନାମ | ପୁସ୍ତକ ବିକ୍ରୟ କେନ୍ଦ୍ର |
|---|---|---|
| ୧. | ଅନୁଗୋଳ | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ଅନୁଗୋଳ<br>ଯୋଗାଯୋଗ ନଂ–୯୯୩୭୨୩୫୯୯୫ |
| ୨. | ବାଲେଶ୍ୱର | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, କଚେରିହତା, ବାଲେଶ୍ୱର<br>ଯୋଗାଯୋଗ ନଂ–୯୮୬୧୧୫୩୩୯୯ |
| ୩. | ବରଗଡ଼ | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ,ଗାନ୍ଧୀ ଛକ ପାଖ, ବରଗଡ଼<br>ଯୋଗାଯୋଗ ନଂ–୯୪୩୭୨୪୦୫୩୦ |
| ୪. | ଭଦ୍ରକ | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ଆପାର୍ଟବିନ୍ଧ ଛକ, ବାଲେଶ୍ୱର<br>ଯୋଗାଯୋଗ ନଂ–୯୪୩୭୩୨୦୭୬୨ |
| ୫. | ବଲାଙ୍ଗିର | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ବଲାଙ୍ଗିର ମନୋହରପୁର ରୋଡ଼<br>ଯୋଗାଯୋଗ ନଂ–୯୪୩୭୦୮୩୨୫୯ / ୭୦୦୮୮୬୯୬୭୫ |
| ୬. | ବୌଦ୍ଧ | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ବୌଦ୍ଧ<br>ଯୋଗାଯୋଗ ନଂ–୯୯୩୮୦୪୮୫୦୦ |
| ୭. | କଟକ | ପଢ଼ିଆରି ପାଠାଗାର, ଚୌଧୁରୀ ବଜାର, କଟକ<br>ଯୋଗାଯୋଗ ନଂ–୯୮୨୭୯୬୧୨୪୧ |

| | | |
|---|---|---|
| ୮. | ଦେବଗଡ଼ | ସୂଚନା କେନ୍ଦ୍ର ଓ ପାଠାଗାର, ଦେବଗଡ଼ |
| | | ଯୋଗାଯୋଗ ନଂ–୯୪୩୭୮୩୨୯୫୦ |
| ୯. | ଢେଙ୍କାନାଳ | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ଢେଙ୍କାନାଳ |
| | | ଯୋଗାଯୋଗ ନଂ–୮୫୯୬୦୬୦୪୦୯ |
| ୧୦. | ଗଜପତି | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ପାରଳାଖେମୁଣ୍ଡି |
| | | ଯୋଗାଯୋଗ ନଂ– ୯୪୩୮୭୬୫୭୨୭ |
| ୧୧. | ଗଞ୍ଜାମ | କ) ସୂଚନା କେନ୍ଦ୍ର ଓ ପାଠାଗାର, ବ୍ରହ୍ମପୁର |
| | | ଖ) ସୂଚନା କେନ୍ଦ୍ର ଓ ପାଠାଗାର, ଛତ୍ରପୁର |
| | | ଗ) ସୂଚନା କେନ୍ଦ୍ର ଓ ପାଠାଗାର, ଭଞ୍ଜନଗର |
| | | ଘ) ସୂଚନା କେନ୍ଦ୍ର ଓ ପାଠାଗାର, ଆସିକା |
| | | ଙ) ସୂଚନା କେନ୍ଦ୍ର ଓ ପାଠାଗାର, ଦିଗପହଣ୍ଡି |
| | | ଯୋଗାଯୋଗ ନଂ– ୯୪୩୮୫୪୧୨୨୨ |
| ୧୨. | ଜଗତସିଂହପୁର | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ଜଗତସିଂହପୁର |
| | | ଯୋଗାଯୋଗ ନଂ–୯୮୫୩୩୪୫୩୧୪ |
| ୧୩. | ଯାଜପୁର | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ଯାଜପୁର |
| | | ଯୋଗାଯୋଗ ନଂ– ୯୪୩୭୨୨୭୬୪୬ |
| ୧୪. | ଝାରସୁଗୁଡ଼ା | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ଝାରସୁଗୁଡ଼ା |
| | | ଯୋଗାଯୋଗ ନଂ– ୮୭୬୩୭୯୬୭୪୭ |

| | | |
|---|---|---|
| ୧୫. | କଳାହାଣ୍ଡି | କ) ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, କଳାହାଣ୍ଡି |
| | | ଖ) ସୂଚନା କେନ୍ଦ୍ର ଓ ପାଠାଗାର, କେସିଙ୍ଗା |
| | | ଗ) ସୂଚନା କେନ୍ଦ୍ର ଓ ପାଠାଗାର, ଧର୍ମଗଡ଼ |
| | | ଯୋଗାଯୋଗ ନଂ–୮୨୪୯୪୨୦୦୨୬ |
| ୧୬. | କନ୍ଧମାଳ | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, କନ୍ଧମାଳ |
| | | ଯୋଗାଯୋଗ ନଂ–୯୪୩୭୪୯୨୪୫୯ |
| ୧୭. | କେନ୍ଦ୍ରାପଡ଼ା | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, କେନ୍ଦ୍ରାପଡ଼ା |
| | | ଯୋଗାଯୋଗ ନଂ–୬୩୭୧୮୬୧୫୭୨ |
| ୧୮. | କେନ୍ଦୁଝର | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, କେନ୍ଦୁଝର |
| | | ଯୋଗାଯୋଗ ନଂ–୯୪୩୭୩୩୫୨୬୩ |
| ୧୯. | ଖୋର୍ଦ୍ଧା | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ପାଲାହାଟ, ଖୋର୍ଦ୍ଧା |
| | | ଯୋଗାଯୋଗ ନଂ–୬୩୭୦୨୭୦୮୭୬ |
| ୨୦. | କୋରାପୁଟ | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, କୋରାପୁଟ |
| | | ଯୋଗାଯୋଗ ନଂ–୯୪୩୯୫୯୧୪୭୩ |
| ୨୧. | ମାଲକାନଗିରି | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ମାଲକାନଗିରି |
| | | ଯୋଗାଯୋଗ ନଂ–୮୨୬୦୬୪୨୫୧୪ |
| ୨୨. | ମୟୂରଭଞ୍ଜ | ଜିଲ୍ଲା ସୂଚନା ଓ ଲୋକସଂପର୍କ କାର୍ଯ୍ୟାଳୟ, ମୟୂରଭଞ୍ଜ |
| | | ଯୋଗାଯୋଗ ନଂ–୯୮୬୧୭୦୪୭୫୭ |

